# ସମର୍ଥ ସୁରେଶ



ବିଶିଷ୍ଟ ଲେଖକ, ଚିତ୍ରଶିଳ୍ପୀ, ଗବେଷକ, ନାଟ୍ୟକର୍ମୀ ତଥା ଲୋକସଂସ୍କୃତି ବିଶେଷଜ୍ଞ

**ସୁରେଶ ବଳବନ୍ତରାୟ**

(ଆବିର୍ଭାବ: ୨୬ ଅକ୍ଟୋବର ୧୯୫୪; ତିରୋଭାବ: ୧୩ ଜାନୁଆରୀ ୨୦୧୪)

୬୫ତମ ଜୟନ୍ତୀ ଅବସରରେ ପ୍ରକାଶିତ

୨୬ ଅକ୍ଟୋବର ୨୦୧୯



## ସଂକ୍ଷେପରେ ସୁରେଶ...

**ସୁରେଶ କୁମାର ବଳବନ୍ତରାୟ**

ଜନ୍ମସ୍ଥାନ : ନରଣଗଡ଼, ଖୋର୍ଦ୍ଧା

ଶିକ୍ଷା : ଉଦ୍ଭିଦ ବିଜ୍ଞାନ (ସ୍ନାତକୋତ୍ତର), ରେଭେନ୍ସା କଲେଜ

ବୃତ୍ତି : ସେଣ୍ଟ୍ରାଲ୍ ଏକ୍‌ସାଇଜରେ ବରିଷ୍ଠ ଅଧିକାରୀ

ପିତା: ଗୋଲକ ବିହାରୀ ବଳବନ୍ତରାୟ

ପତ୍ନୀ ଉର୍ମିଳା ବଳବନ୍ତରାୟ

ପୁତ୍ର : ନୀଳ ଲୋହିତ ବଳବନ୍ତରାୟ ଓ ଶୁଭ୍ରରଜତ ବଳବନ୍ତରାୟ

କନ୍ୟା ଅନ୍ୟା ଅନୁରୂପା

**ତାଙ୍କ ବହିର ନାମ :-**

୧. ସୁଜନେ ହୋ ବାଲିରେଣୁ ମହାବନ୍ଧ
୨. ରେପ୍
୩. କହ୍ନେଇକୁ ଖୋଜିଖୋଜି
୪. ମା' (ଅନୁବାଦ) ଉପନ୍ୟାସ
୫. ପ୍ରହ୍ଲାଦ ନାଟକ (ସମ୍ପାଦନା)
୬. ସେଇ ସମୟ ଏଇ ସହର ଭୁବନେଶ୍ୱର
୭. ହିରାପୁରର ଚଉଷଠି ଯୋଗିନୀ ମନ୍ଦିର (ଇଂରାଜୀ ଓ ଓଡ଼ିଆ)
୮ ଅପରେସନ ଭଅଁରାଗଡ଼ (ନାଟକ)
୯. ହିରାପୁରର ଚଉଷଠି ଯୋଗିନୀ ମନ୍ଦିର (ହିନ୍ଦୀ)
୧୦. ଯୁଗକୁ ଯୁଗ ଏହିମତେ (ଗୀତିନାଟ୍ୟ)

**ପ୍ରକାଶ ଅପେକ୍ଷାରେ :**

୧୧. ରାଣୀପୁର-ଝରିଆଲ୍ (ଇଂରାଜୀ ପୁସ୍ତକ)
୧୨. ସଦାଘର କା ତାବିଜ୍ (କ୍ଷୁଦ୍ର ନାଟକ)

ଫଟୋଗ୍ରାଫି : ଡ.ଓ. ସାହୁ

**ନିର୍ବାହ:** ଅଧ୍ୟାପିକା ଅନ୍ୟା ଅନୁରୂପା

**ସହଯୋଗ:** ରୁନା ପଣ୍ଡା, ପବିତ୍ର ପ୍ରଧାନ ଓ ଶାଶ୍ୱତୀ ଜେନା

**ଠିକଣା :**

୦୨, ଶ୍ରାବଣୀ ଏନ୍‌କ୍ଲେଭ୍, କପିଳପ୍ରସାଦ, ଭୁବନେଶ୍ୱର-୨,

ମୋ- ୯୮୬୧୦୧୯୫୦୪/୮୨୪୯୨୩୬୯୧୪

ମୁଦ୍ରଣ: ସୃଜନ, ଭୁବନେଶ୍ୱର-୨୩

ମୋ: ୯୪୩୮୩୬୨୩୯୩



# ସୁରେଶ ବଳବନ୍ତରାୟଙ୍କ ସ୍ମୃତିରେ

## ପଦ୍ମବିଭୂଷଣ ସୀତାକାନ୍ତ ମହାପାତ୍ର

ଶ୍ରଦ୍ଧେୟ ସୁରେଶ,

ପୁଣ୍ୟଦିବସ ମକରସଂକ୍ରାନ୍ତି। ସୂର୍ଯ୍ୟଙ୍କ ଉତ୍ତରାୟଣ। ଶରଶଯ୍ୟାରେ ଶୋଇ ପିତାମହ ଭୀଷ୍ମ ଏଇ ଉତ୍ତରାୟଣ ଅପେକ୍ଷାରେ ଥିଲେ। ଠିକ୍ ତା' ଦିନକ ଆଗରୁ ତମେ ବାହାରିଗଲ ସ୍ୱର୍ଗଲୋକକୁ। ଛାଡ଼ିଗଲ ଖାଲି ତୁମ ଶୋକାକୁଳ ପରିବାରବର୍ଗଙ୍କୁ ନୁହେଁ, ତୁମକୁ ଅତି ସ୍ନେହ କରୁଥିବା ମୋ ପରି ବହୁ ସାହିତ୍ୟିକ ବନ୍ଧୁଙ୍କୁ। ବିଶେଷକରି ସକାଳବୁଲା ସାଙ୍ଗମାନଙ୍କୁ।

ତୁମ ସହ ଟେଲିଫୋନ୍‌ରେ କଥା ହୋଇଥିଲି। ତମ ଅନୁରୋଧ ସତ୍ତ୍ୱେ ଚଉଷଠି ଯୋଗିନୀ ମହୋତ୍ସବ (ତୁମେ ହିଁ ସେ ଉତ୍ସବର ପ୍ରାଣକେନ୍ଦ୍ର) ଯାଇପାରିଲିନି ବୋଲି କହିଲି ତୁମ ଲିଖିତ 'ଚଉଷଠି ଯୋଗିନୀ' ବହି ଖଣ୍ଡିକ ଦେଖି ଐତିହାସିକ ରୋମିଲା ଥାପାର ଖୁସି ହୋଇଥିଲେ। ସାଥୀରେ ଓଁକାରନାଥ ମହାନ୍ତିଙ୍କ ସହ ସେଠାକୁ ଯାଇଥିବା କଥା ମୋଠାରୁ ଶୁଣିଲ, ଖୁସିହେଲ। 'ସେଇ ସମୟ, ଏଇ ସହର, ଭୁବନେଶ୍ୱର' ମୋର ଅତି ଆଦରର ବହିଟି ମୋତେ ଦେଇଥିଲ। ସୌରୀନ୍ଦ୍ରଙ୍କ ଶେଷତମ ଛୋଟ କବିତା ବହିଟି ତମ ଅଳଙ୍କରଣ ସହ ମୋତେ ବି ଦେଇଥିଲ। ଭୁବନେଶ୍ୱର ଉପରେ ଏତେ ଚମତ୍କାର ବହି, ଏକାମ୍ରକ୍ଷେତ୍ର ସମ୍ପର୍କିତ ଓ ବହୁ ମୁଖ୍ୟମନ୍ଦିରର ବର୍ଣ୍ଣନା ସହିତ ମୋ ବିଚାରରେ ଦୁର୍ଲ୍ଲଭ। ସେଥିରେ ବି ରହିଛି ପ୍ରଣିଧାନଯୋଗ୍ୟ ୧୦/୧୫ଟି ମଠ କଥା।

ଓଡ଼ିଶାର ପ୍ରହ୍ଲାଦ ନାଟକ ଓ କର୍ଣ୍ଣାଟକର ଯକ୍ଷଗାନ ଉପରେ ତୁଳନାତ୍ମକ ଅଧ୍ୟୟନ ସମୟରେ ଥରେ ଅଧେ ତୁମେ କଥା ହୋଇଥିଲ। ଚିତ୍ରଶିଳ୍ପୀ, ତୁମେ ଜଳରଙ୍ଗ, ତୈଳରଙ୍ଗ ଏବଂ ମିଶ୍ରିତ ମାଧ୍ୟମରେ ଅନେକ ଚିତ୍ରକଳା ପ୍ରଦର୍ଶନୀର ଆୟୋଜନ କରିଥିଲ। ମନ୍ଦିରମାଳିନୀ ଭୁବନେଶ୍ୱର ଥିଲା ତୁମର ଅତି ପ୍ରିୟ। ଦୀର୍ଘ ଦୁଇହଜାର ବର୍ଷ ଭିତରେ ନିର୍ମିତ ଏ ସକଳ ମନ୍ଦିର, ଜଳାଶୟ, ମଠ ସବୁ ତୁମ ଆଙ୍ଗୁଠି ଆଗରେ ଥିଲା। ହାତ ପାପୁଲିର ଚିହ୍ନସବୁ ପରି ସହରର ସେଇ ସବୁ ଚିହ୍ନ ପଛରେ ପଡ଼ିରହିଲା। ନୀରବରେ ଚାଲିଗଲ। ଏତେ କ'ଣ ତରତର ହୋଇ ଯିବାର ଥିଲା ? ୫୯ ବର୍ଷ ଯେ ନୂତନ ଜୀବନର ପ୍ରାରମ୍ଭ। ତା'ଛଡ଼ା ଏତେ କାମ, ଏତେ ଯୋଜନା ତୁମ ମୁଣ୍ଡ ଭିତରେ ସବୁବେଳେ ଖେଳୁଥିଲା। ତୁମକୁ ଚିହ୍ନିଥିବା, ଜାଣିଥିବା, ଭଲପାଉଥିବା ଆମେ ସଭିଏଁ ତୁମର ଶୂନ୍ୟତା ଅନୁଭବ କରିବୁ ବଞ୍ଚିଥିବା ଯାଏ। ❧

ଶ୍ରଦ୍ଧା, ୨୧,
ସତ୍ୟନଗର, ଭୁବନେଶ୍ୱର



# ଆମେ କଣ୍ଢେଇମାନେ କ'ଣ କରିବୁ ?

ଦେବ୍ରାଜ ଲେଙ୍କା

ହେ ବନ୍ଧୁ..., ହେ ସଖା..., ହେ ମିତ..., କୁଆଡ଼େ ଗଲୁରେ ବଦ୍‌ମାସ୍..., ଛାତିରେ ହାତ ପିଟି ମୁଣ୍ଡ ବାଡ଼େଇବାକୁ ବି ଏ ଅମଙ୍ଗୁଳିଆ ବେଳକୁ ଫୁରସତ୍ ମିଳୁନି; ସବୁ ଅଡୁଆ, ଅବାଗିଆ ଅସୁବିଧା ହୋଇଗଲାରେ ପଥର..., କ'ଣ ସିଏ; କୁଆଡ଼େ ସେ ବାଟ, କ'ଣ ସେ ରାଜ୍ୟ..., ଭାଗ୍... ଭାଗ୍... ଆଉ କହନା... କହନା, ବିଶ୍ୱାସ ଘରେ ଅବିଶ୍ୱାସର ନିଆଁ ଲଗେଇ ତୁ ଚାଲିଗଲୁ, ଗଲୁ ଯେ ଗଲୁ, ଆଉ ଶୁଣିଲୁ ନାହିଁ, ପାଟି ଫିଟେଇଲୁ ନାହିଁ, ପଛକୁ ବାରେ ମାତ୍ର ଚାହିଁଲୁ ନାହିଁ ।

ହାଃ... ଦଇବ ! ମୁଁ କ'ଣ କେବେ ବିଶ୍ୱାସ କରିଥିଲି, ଏମିତି ଗୋଟାଏ ଶୂନ୍ୟଚଢ଼କ ପଡ଼ି ନିଆଁ ଜଳେଇ ଦବ ? ନାରଖାର ମଶାଣି ତୁଠକୁ ବୋହିଆ, ବହଳିଆ ମୁହଁରେ ଧାଇଁଗଲା ବେଳକୁ, ମଶାଣିର ମୁଣ୍ଡେ ଉଆ ନିଆଁ ଟହଟହ ହସୁଛି, ଆଉ ମତେ କହୁଛି; ସବୁ ସଇଲା ତ ! ଏଥର ଫେଡୁଲିଆ ହେଇ, ଯାହା ଧନ ଥିଲା ତୋର, ଜିତାବାଜିକୁ ହରେଇ ହରେଇ ତୁ ଫେରି ଯା' !

ମୋ ଗୋଡ଼ ହାତରେ ବଳ ନାହିଁ ସୁରେଶ... ! ମୋ ମୁଣ୍ଡ ଭଉଁରି ଯାଉଛି । ମତେ ଝୋଲା ମାରିଯାଉଛି । କଂସେ ପାଣି ଢକଢକ କରି ପିଇଯାଉଛି । ହାଁ ମରା ଜଳକା ନିହଳ ଅବସ୍ଥା । ନୋହିଲା କଥା ହେଇଗଲାରେ ଦାଗଦିଆ ଦଗାଦିଆ..., ଏମିତି କ'ଣ କଲୁରେ..., ଗଛପତ୍ରକୁ କନ୍ଦେଇ ଚାଲିଗଲୁ ଅବେଳରେ; ଅସମୟରେ ।

ଅଜଣା, ଅଚିହ୍ନା, ପରଲୋକ ! ମୃତ୍ୟୁ !

ଜୀବନର ସୁଆଦ ଚାଖୁ ଚାଖୁ ପରୱାନା ଆସି ହାଜର ।

ତାକୁ ରୋକିବ କିଏ ସେ ସାରା ମହୀମଣ୍ଡଳରେ ?

ସୁରେଶ..., ମତେ ତୁ ତୋ ପାଖେ ଋଣୀ କରିଦେଲୁରେ... ! ଋଣୀ, ଋଣୀ ଏକାବେଳେ ଋଣୀ । ତାକୁ ଶୁଝିଲା ବେଳକୁ ତାତିଲା ବୈତରଣୀ ପାରିହେଇ ତୁ ଆଖି ଅପହଞ୍ଚ ଘନ କୁହୁଡ଼ି ପଟଳରେ କାହିଁ କୁଆଡ଼େ ଦିଗନ୍ତ ଧାରରେ ମିଶିଗଲୁ । ବୈତରଣୀର ଏ ପାଖ ଧାରରେ ମୁଁ ବୋକା ହେଇ ତୋ ଅଫେରା ବାଟକୁ ଚାହିଁ ରହିଛି । ଅଥଚ ପଞ୍ଜୁରୀ ଭିତର ପୋଷା ଶୁଆ ଅମାନିଆ ହୋଇ ଉଡ଼ି ଉଡ଼ି ଯାଉଛି । କଳାବଉଦ ଭିତରେ ପଶି ମିଶି ଯାଉଛି ।

ମୁଁ ବାଟବଣା ହେଇଯାଉଛି ।

ସୁରେଶ..., ତୋ ପାଇଁ ମୁଁ କେବେ ହାରିନି । ତୁ ମତେ ଫି' ବେଳେ ଜିତେଇ ଚାଲିଥିଲୁରେ ଧୀଟ..., ଏଠି ବସି ମୁଁ ତୋ ଗୁଣ ସୁମରି ବାହୁନୁଛି । ହାୟ... ହାୟ..., ଏ କି ଆଙ୍ଗୁଠି..., ଏ ଦଇବ କି ପାଷାଣ ହେଲା..., ଏଇ ହାରାମୀ ଆଙ୍ଗୁଠିରେ ନିଷ୍ଠୁର କଲମ ଧରି ମୁଁ ତୋର ହାଟବାହୁଡ଼ା କଥା ଲେଖୁଛି । ହାଟ ସଉଦା ତ ବାକି ଥିଲା । ପୂରା ସାରିନଥିଲୁ । କ'ଣ ହେଲା କେଜାଣି, କିଆଁ ଅମାନିଆ, ଅବୁଝା ହୋଇ ଅଡ଼ି ବସିଲୁ ଆଉ ଏକାମୁହାଁ ହେଇ ବାହୁଡ଼ି ଗଲୁ ? ଏକା ଏକା ବାଟୋଇ ତୁ । ଏ ଅଜଣା, ଅସାଣ୍ଡୁଆ ବାଟରେ ତୋର କେହି ସାଥି ନାହିଁ, ସାକ୍ଷୀ ବି କେହି ନାହିଁ । କାନ୍ଧରେ ତୋର ଆଗିଲା, ପିଛିଲା ପାପ ପୁଣ୍ୟ ଭାର । ତୁ ଧଇଁ ସଇଁ ହୋଇ ବାଟ ଚାଲୁଛୁ । ଆମେ ତୋର ପାପ କାହିଁକି ନେବୁରେ... ? ତୋ ଦୁଃଖକୁ ଆମେ କିଆଁ ନେବୁ ? ଆମେ ସବୁ ସୁଖର ପିଆରା । ଦୁଃଖକୁ ନାହିଁ... ନାହିଁ... ।

ତୁ କିନ୍ତୁ ମତେ ବହୁତ ସୁଖ ଦେଇଥିଲୁ । ମୁଁ ସେଥିକୁ ଅଭାଜନ । ଅଯୋଗ୍ୟ । କିଆଁ ମତେ ଏତେ ସୁଖ ପାଉଥିଲୁ ? ମଣିଷକୁ ମଣିଷ ସୁଖ ପାଇବା କ'ଣ ମଣିଷପଣିଆ କଥା ? ମାନବିକତା ? ମତେ ଈର୍ଷା ନକରି, ଘୃଣା ନକରି କିଆଁ ଏତେ ସୁଖ ପାଇଲୁ ? ସବୁ ଅହଙ୍କାରକୁ ତେଜ୍ୟା କରି ଏ ସୁଖ ପାଇବାଟାର ହେତୁ କ'ଣ ଥିଲା ମୁଁ ବୁଝିପାରୁନି ।

ଜୀବନରେ ବହୁ ଫୁଟାଣିଆ, ଅହଙ୍କାରୀ ଲୋକଙ୍କୁ ଦେଖିଛି । କାହିଁକି ଯେ ଏତେ ଗର୍ବ, ଏତେ ଫୁଟାଣି, ଏତେ ଅହଙ୍କାର ? ସବୁ ଅହଙ୍କାର ତ ଲୋଟିଯାଏ ସବା ଶେଷରେ ସମଥାନ ମଶାଣିରେ । ନା ହୀନିମାନୀ, ନା ମାନୀ ନା ଗରିବ ନା ଧନୀ । ଯେଉଁମାନଙ୍କୁ କୁହାଯାଏ, ସେମାନେ କ'ଣ ବୁଝିପାରନ୍ତି ନାହିଁ ? ଦୟା ଲାଗେ, ଅହଙ୍କାର ଯୋଗୁ ମଣିଷପଣିଆ ମାଟିରେ ଘୁଷୁରୁଛି କେମିତି ? ମୂଢ଼ ଅହଙ୍କାରୀ କିନ୍ତୁ ନିଜେ ଠଉର୍ କରିପାରେ ନାହିଁ, ଏ ଉତର କେତେ ଦିନ ପାଇଁ ? ଅନ୍ଧ ଅଜ୍ଞାନତାର ଗୋହିରୀ ଭିତରେ ପଶି ନିଜର ବଡ଼ପଣର ହୁଙ୍କାର ଦେଲାବେଳକୁ ସବୁ ଅଭିନୟ ଶେଷ । ମଣିଷ ଭିତରେ ଦେବତା ବସିନି ବରଂ ଗୋଟାଏ ମାଙ୍କଡ଼ ବସିଛି ।

ଭୋର୍ ହୋଇଥିବ । ସୂର୍ଯ୍ୟୋଦୟର ନବ ପ୍ରଭାତ । କଅଁଳ ମନା କଅଁଳ ପୃଥିବୀ । କଅଁଳ ପରିବେଶ । ଦେବାଳୟର ଘଣ୍ଟ, କାହାଳୀ, ଶଙ୍ଖ ବାଜି ବୁଲୁଥିବ । ବ୍ରାହ୍ମ ମୁହୂର୍ତ୍ତ । ବ୍ରାହ୍ମ ମୁହୂର୍ତ୍ତ ନିଜେ ଶୁଭ ମନ୍ତ୍ର ଗାନ କରୁଛି । ଏହି ସମୟରେ ମୋର ଫୋନ୍ ହଠାତ୍ ବାଜି ଉଠିବ । ଏତେ ଭୋର୍‌ରୁ ମତେ କିଏ ଫୋନ୍ କଲା ? ଚମକି ଫୋନ୍ ଧରିବି; କିଏ ?

ମୁଁ ସୁରେଶ... ?

କିରେ..., ଏତେ ସକାଳୁ କାହିଁକି ମୋ ପାଖକୁ ଫୋନ୍ କଲୁ ?

ଆପଣଙ୍କ କଥା ମନେପଡ଼ିଲା । ଏଇ ଆପଣଙ୍କ କଥା ଏଠି ଆମେ ଆଲୋଚନା କରୁଛୁ ।

ବଡ଼ି ଭୋର୍‌ରୁ ମୋ କଥା ? ଆଶ୍ଚର୍ଯ୍ୟ ! ହଁ..., ଆପଣଙ୍କ କଥା । କିଏ ତୋ ସାଥିରେ ଅଛନ୍ତି ? ତୁମେ ସବୁ ସକାଳୁ କିଏ ଭେଟ ହଉଛ ? ଦୀନନାଥ ପାଠୀ, ସୌରୀନ୍ଦ୍ର ବାରିକ, ଟୁବ ଆଉ ମୁଁ । ମର୍ଣ୍ଣିଂ ୱାକ୍‌ରେ ଆମେ ଅଛୁ ।

ଆରେ ବାପ୍‌ରେ... ! କାହା ନାଁ ସବୁ କହୁଛୁ ? ଏକାକୁ ଆରେକ ବଳୀୟାର୍ । ଜଣେ ପ୍ରଖ୍ୟାତ ଚିତ୍ରକର, ଜଣେ ପ୍ରସିଦ୍ଧ କବି ଓ ଆଉଜଣେ ଗୋଟିଏ ଅଗ୍ରଣୀ ପତ୍ରିକାର ସମ୍ପାଦକ । ଏଇବେଳେ ମୋପରି ଗୋଟାଏ ଫର୍ଟିଚର କମ୍ପାନୀ କଥା କାହିଁକି ବା ଆଲୋଚନା ହେଲା ?

ସେ ପାଖରୁ ହସି ହସି ସୁରେଶର ସ୍ୱର: ଆପଣ ଯେ କାହିଁକି ଫର୍ଟିଚର କମ୍ପାନୀ ହେବେ ? ଆପଣ ତ ସମ୍ରାଟ୍ ।

ହେତ୍..., ସେ ବାଜେ କଥା କହନା । ଆରେ ରାଜ୍ୟ ନଥାଇ ମୁଁ ବା କି ସମ୍ରାଟ୍ ? ତୋର ଏ ସମ୍ରାଟ ଶବ୍ଦ ଶୁଣିଲେ, ଲୋକେ ହସିବେ । ହଉ... ଛାଡ଼୍... । ସକାଳୁ ସକାଳୁ ମୋର ବଡ଼ ଭାଗ୍ୟ ଯେ, ତୋପରି ମୁଁ ଗୋଟିଏ ବନ୍ଧୁକୁ ପାଇବାର ଗୌରବ ମତେ ମିଳିଛି । ହଉ..., ଏଥର ଫୋନ୍‌ଟା ଦୀନନାଥବାବୁଙ୍କୁ ଦେ... ।

ସୁରେଶ... ! ସୁରେଶ... !! ସୁରେଶ... !!! ତୁ ଗୋଟାଏ ବିସ୍ତୀର୍ଣ୍ଣ ହୃଦୟର ଅଧିକାରୀ ଥିଲୁରେ ମୋ ଭାଇ... ! ତୁ ଥିଲୁ ବୋଲି ମୁଁ ଅଛି । ତୁ ଏଇନା ନାହୁଁ । ତେବେ ମୁଁ କୁଆଡ଼େ ଯିବି ? ବରଂ ତୁ ନିଜେ ହିଁ ସମ୍ରାଟ ଥିଲୁ । ଅତିଶୟ ସ୍ନେହରେ ମୁଁ ତୋର ପ୍ରଜା ହେଇଯାଉଥିଲି । ଏତେ ସ୍ନେହ କାହାକୁ କ'ଣ କେବେ ମିଳିପାରେ ? ଏତେ ଭୋର୍‌ରୁ ମୋ ପାଇଁ କିଏ ବା ଶୁଭ ଆଲୋଚନା କରିପାରେ ? ଏବଂ ଏଥିପାଇଁ ମୋ ପାଖକୁ କିଏ ବା ଫୋନ୍ କରିପାରେ ? କାହାର ବା କି ଗରଜ ପଡ଼ିଛି ଯେ, ମୋ ପାଖକୁ ବିନା କାରଣରେ ଫୋନ୍ କରି ମୋର ଶୁଭ ମନାସିବ ?

ଗୋଟାଏ ମୋଟା ସୁନେଲୀ ରେଶମୀ ପଘାରେ ତୁ ମତେ ବାନ୍ଧି ଦେଇଥିଲୁରେ ବଗୁଲିଆ... ! ମୁଁ ତୋ ପାଖରେ ବନ୍ଧା ପଡ଼ି କଏଦୀ ହୋଇ ଯାଇଥିଲି । ଏଇଟା ସେ ରେଶମୀ ପଘାକୁ ତୁ ନିଜେ ମୋଠାରୁ କାଟିଦେଲୁ । ମୁଁ ତ ଫୁଙ୍ଗୁଳା ହୋଇଗଲି ।

ସବୁ ମାୟା ବନ୍ଧନ ଆଖି ପିଛୁଳାକେ କାଟି ତୁ ଶେଷରେ ସତ୍ୟ ପଥରେ ଚାଲିଗଲୁ ଧର୍ମ ସଭାକୁ । ମୁଁ ରହିଗଲି ପାପ ଜଗତରେ ଅସତ୍ୟକୁ ଜାବୁଡ଼ି ଧରି ।

ସୁରେଶ... ! ତୋର ମୋର ଦେଖା ହୋଇଥିଲା ପ୍ରଥମେ, ମୋ ଦୋକାନ ନବପ୍ରଭାତରେ । ଗୋଟାଏ ଅସଲି ଷଣ୍ଢମାର୍କା ମହା ଖୁସ୍‌ବୁଦାର୍ ସିଗ୍ରେଟ୍ ପ୍ୟାକେଟ୍ ଆଣି ଯେତେବେଳେ ଉପହାର ଛଳରେ ମୋ ସୋ' କେଶ୍ ଉପରେ ଥୋଇଲୁ, ମୋ ଆଖି ଖୋସି ହୋଇଗଲା । ଘୁଷୁରୀକୁ ପାଚିଲା କଦଳୀ ! ଯାଃ... ଶଳାକୁ, ଏକ୍‌ଦମ୍ ୫୫୫ ଷ୍ଟେଟ୍ ଏକ୍ସପ୍ରେସ୍ ! ୟା'କୁ ତ ବିଜୁ ପଟ୍ଟନାୟକ ଟାଣୁଛି । ମୁଁ କ'ଣ ଟାଣିବି ? ହଉ... ହଉ... ! ଟାଣ୍... ଟାଣ୍... । ନୂଆ ବନ୍ଧୁ ଯେତେବେଳେ ଏତେ ସରାଗରେ ପିଇବାକୁ ତତେ ଦେଇଛି, ବନ୍ଧୁଗୁଣ ସୁମରଣା କରୁଥା'..., ମନ ମଉଜିରେ କଳେ କଳେ ଧୂଆଁ ଛାଡୁଥା' !

ତୁ ମୋ ଲେଖାକୁ ଭଲପାଉ । କାହିଁକି ମୋ ଲେଖାକୁ ଏତେ ଭଲପାଉ ? ମୁଁ ବାଳାଙ୍କ ବାଲ୍ ଲେଖେ । କି ଲେଖକ ବେ ମୁଁ ? କ'ଣ ମୁଁ ଲେଖେ ? ଅନ୍ୟ ଲେଖକମାନେ ଯେତେବେଳେ ତାରା ହେଇ ହା' ହାଲ୍ଲୋଳ ପକଉଛନ୍ତି, ମୁଁ ବା ତାଙ୍କ ତୁଳନାରେ କ'ଣ ? ଶଳା..., ବେଙ୍ଗି ପିତଳକୁ ତୁ ସୁନା ବୋଲି କହି ଭଣ୍ଡଉଛୁ ? ମୁଁ ତ ଭୀମଭୋଇ ପରି ବଣ ଜଙ୍ଗଲରେ ବସି ଲେଖେ । ଆପଣା ମର୍ଜିରେ ଚୂର୍ ହୋଇ ମହାନଦୀ କୂଳରେ ବୁଲେ । ବଣ ଜଙ୍ଗଲରେ ବୁଲୁଥିବା ମୁର୍ଖ, ସହରର ଲେଖକଙ୍କ ସାଥିରେ ଟକ୍କର୍ କ'ଣ ଦେଇପାରିବ ? ତଥାପି ମୁଁ ଟ୍ରାମ୍ପେଟ୍ ଫୁଙ୍କେ । ବଇଁଶୀ ବଜାଏ । ଡ୍ରିମ୍ ପିଟେ । କାନକୁ ତାବ୍‌ଦା କରେ । ହୃଦୟକୁ ଛୁଇଁ ଛୁଇଁ ଯାଏ । ସେଇଥିପାଇଁ ତ ତୋ ଆଖିରେ ମୁଁ ନବାବ୍, ବାଦ୍‌ଶାହ, ସମ୍ରାଟ... ।

ହାଃ... ହାଃ... ହସି ହସି ମୁଁ ଶେଷରେ କାନ୍ଦୁଛିରେ ବଦ୍‌ମାସ୍... ! ମୋ ପାଖରେ କେତେ ଲୀଳା ଲଗେଇ ତୁ ଚାଲିଗଲୁ ? ମୋର ମୁତ୍‌ଫର୍କା ବଇଁଶୀ ନାଦ ପାଇଁ ସିନା ତୁ ମୋ ପାଖକୁ ଧାଇଁ ଆସୁଥିଲୁ..., କିନ୍ତୁ ଶେଷକୁ ଏମିତି ସିଏ ଲୁଚି ଛପି କୋଉଠି ବସି ବଇଁଶୀ ଫୁଙ୍କି ତୋ ମନ ମୋହି ନେଲା ଯେ, ତୁ ତା'ରି ପାଖକୁ ଅମାନିଆ ହେଇ, ଜଳାକବାଟି ବାଟେ ତେଇଁ ଚାଲିଗଲୁ, ଯିଏ ପାନ୍ନାଲାଲ୍ ଘୋଷ୍ କି ହରିପ୍ରସାଦ ଚୌରାଶିଆ କି ବିସ୍‌ମିଲ୍ଲା ଖାଁକୁ ଭରା ଆଶୀର୍ବାଦ ଦାନରେ ପୋତି ପକେଇ ଥିଲା । ସିଏ ଯମୁନା ତୀରରେ କଦମ୍ବ ମୂଳରେ ବଇଁଶୀ ଏଇନା ବଜଉଛି । ତୁ ଆଉ ଆମ ପାଖକୁ ବିଶେଷ କରି ମୋ ପାଖକୁ ଆସିବୁ କିଆଁ ?

ତୁ କିନ୍ତୁ ମୋ ପାଖକୁ ଆସୁଥିଲୁ ।

ଆସୁଥିଲୁରେ ଦାଗଦିଆ ଦଗାଦିଆ... ଆସୁଥିଲୁ ।

ସାଥିରେ ଟୁବକୁ ନେଇ ।

ସେ ବେଳ ଭାରି ଖରାପ ବେଳ । ବାଙ୍କି ଟଳମଟଳ । ଉବୁଟୁବୁ ପାଣିରେ ବାଙ୍କି ଭାସୁଛି । ମହାନଦୀର ବଢ଼ି । ବନ୍ୟା । ଉଚ୍ଛନ୍ନ ଗାଁ ଗଣ୍ଡା । ଚୂଲି ଲାଗୁନି । ରଣନଦୀରେ ସାପ ମୁଣ୍ଡ ଛିଣ୍ଡି ଯାଉଛି । ରଣଶଙ୍ଖର ବିରାଟ ଲୁହା ପୋଲ, ଯିଏ କି ବାଙ୍କି-ଡମପଡ଼ାର ଗର୍ବ ଆଉ ଗୌରବ, ମହାନଦୀର ବନ୍ୟା ତୋଡ଼ିରେ ସୋଲ ପରି ଭାସିଗଲା । ଘାଇ ଫିଟି ମେଲା ଆଁ... । ସେଇ ଉବୁଟୁବୁ ପ୍ରଳୟ ବେଳେ ମୋ ପିଣ୍ଡା ତଳେ ତୁ ଆଉ ଟୁବ ! ଆରେ... ଆରେ..., ମୁଁ କ'ଣ କରିବିରେ ? ତୁମେ କେମିତି ଆସିଲରେ... ? କାହିଁକି ଆସିଲରେ... ?

ତୁ କିନ୍ତୁ ହସୁଥିଲୁ । କହିଲୁ : ଡଙ୍ଗାରେ ବସି ଆପଣଙ୍କ ପାଖକୁ ଆସିଛୁ । ମଟର ସାଇକେଲ୍ ରଣ ମୁହଁରେ ଥୋଇ ଆସିଛୁ । ରଣ ମୁହଁ ମୋ ଘରଠାରୁ ଅଢ଼େଇ କୋଶ ବାଟ । ଅଢ଼େଇ କୋଶ ବାଟ ତମେ ଦିହେଁ ଏ ଉଛୁଳା ବଢ଼ିରେ ମୋ ପାଖକୁ ଡଙ୍ଗାରେ ବସି ନିଜ ଜୀବନକୁ ଛି... କରି ପଳେଇ ଆସିଲ । ଆରେ ହେ... ଏ ଗରୀବ୍‌ଖାନାରେ ତୁମର କିଆଁ ଏ ପଦାର୍ପଣ ? ଏଡ଼େବଡ଼ ଉଦାରପଣ କେବଳ ଦେବ ଅଂଶୀ ଲୋକଙ୍କଠାରେ ମିଳେ । ତୁମେ ମଣିଷ ନୁହେଁରେ ବାବୁମାନେ... ତୁମେ ଦି'ଜଣ ଯାକ ମୋ ଆଖିରେ ମାହାପୁରୁ । ମୁଁ ତୁମକୁ କୋଉ ଥାଳିରେ କୋଉ ଦୀପ ନେଇ ବନ୍ଦାପନା କରିବି ? କ'ଣ କରି ମୁଁ ତୁମର ରଣ ଶୁଝିବି ? ମୁଁ ହାଉଳି ଯାଇଥିଲି । ମୋର ଚେତା ବୁଡ଼ିଗଲା ।

ଆରେ... ଆରେ ଟୁବ..., ମୋ ଜିଗର୍ କା ଟୁକୁଡ଼ା... ! ଆରେ..., ତୁ ଅଛୁ । ସିଏ କୁଆଡ଼େ ତତେ ଭୁଟେଇ, ହାଟ ମଝିଟାରେ ଛାଡ଼ି ଚାଲିଗଲା । ଶୋକରେ ବତୁରି ତାକୁ ସୁମରଣା କରି ତୁ ଗୋଟାଏ ବହି ଛାପୁଛୁ । ସେଇଥିରେ ମୋର ଶୋକ ରହିବ । କି ଶୋକ କରିବିରେ ମୁଁ... ? ଗୋଟାଏ ମାଙ୍କଡ଼ା ପଥରର ମୋ ଛାତି । ସେ ଛାତିରୁ ଅବା କୋଉ ଶୋକ ବାହାରିବ ? ଯେତେ ଶୋକ କଲେ ବି ତୋର ବହି ପୃଷ୍ଠା ଅଣ୍ଟିବନିରେ... ଅଣ୍ଟିବନି ।

ମତେ ସିଏ ଅଜୟ, ଅରବିନ୍ଦ ସାଥିରେ ନେଇ ଭଞ୍ଜନଗର ସଭାକୁ ଯାଇଥିଲା । ବାଟଯାକ ଖୋଲ୍‌ଟି ଗପ । ମସ୍ତାନୀ ଗପ । ପୂରା ବ୍ଲୁଲନ୍ ଆକାଶରେ ଆମେ ଘୂରୁଛୁ । ଚୂର୍... । ସିଏ ବି ଚୂର୍... ମୁଁ ବି ଚୂର୍... । ଜୀବନ ! ଜୀବନ ! ନଈ ସୁଅ ପରି ଜୀବନ ବୋହି ଚାଲିଛି । କିନ୍ତୁ ଜୀବନର ଶେଷ ପୃଷ୍ଠା ଆସିଗଲାରେ ଟୁବ... ! ବଳବନ୍ତରାୟ ସବୁ ବଳ ହାରି, ରାୟପଣକୁ ଉଜେଇଁ ଶେଷ ପୃଷ୍ଠାକୁ ଚିରି ମଶାଣି ନିଆଁର ଆଁ ଭିତରକୁ ଅତି ନିର୍ଦ୍ଦୟ ଭାବେ ଫୋପାଡ଼ି ଦେଲା । ଏତେ ଉଦ୍ଧାର, ଶେଷ ପହରକୁ ଏତେ ନିଦାରୁଣ କେମିତି ହେଲାରେ ଟୁବ... ?

ପୁରୁଣା ବସ୍‌ଷ୍ଟାଣ୍ଡରେ ସେ ସଞ୍ଜବେଳେ ସାହିତ୍ୟିକ ସାଙ୍ଗମାନଙ୍କ ସାଥିରେ ଆସର ଜମଉଥିଲା । ପୁରୁଣା ବସ୍‌ଷ୍ଟାଣ୍ଡ । ସାହିତ୍ୟର ଆଖଡ଼ା ପୀଠ । ସେଇଠି ଆଗାମୀ ସାହିତ୍ୟର ଖସଡ଼ା କଷାଯାଏ । ସେଇଠି ବି ସିନେମା ଓ ସଙ୍ଗୀତର ଆଲୋଚନା । ସେଠି କଫି ହାଉସ୍ କ୍ଲବ୍ । ସୁରେଶ ସେଥିରେ ମୁଖ୍ୟ ଯୋଗାଡ଼ିଆ । ମୁଁ ବି ସେଠି ପହଞ୍ଚିଯାଏ । ନାନା ସ୍ନେହ ଉଚ୍ଛ୍ୱାସ । ନାନା ସମ୍ବର୍ଦ୍ଧନା । ସେଠି ସିଏ ମତେ କଫି ଦବ । ମସଲାଦାର୍ ଡବଲ୍‌କଡ଼ା ପାନ ଦବ ଗୋଟିଏ ଜରି ପ୍ୟାକେଟ୍‌ରେ ପୁରା ଭର୍ତ୍ତି କରି । ହସୁଥିବ ଆଉ ହସୁଥିବ । ଏତେବଡ଼ ମଣିଷଟା ! ମତେ ମୁଣ୍ଡିଆ ମାରୁଥିବ । ତା' ମୁଣ୍ଡିଆ ମରାରେ ମୁଁ ଶଙ୍କି ଯାଇ ଥରୁଥିବି ।

ମୁଁ ତା'ର କ'ଣ କିରେ ଟୁବ... ?

ତୁ ଜାଣିନୁରେ ଟୁବ..., କଲିକତାରୁ ବହି ମଗେଇ ସିଏ ଡାକ ଯୋଗେ ମୋ ପାଖକୁ ପଠେଇ ଥିଲା । ଥର ଥର କରି ଦି'ଥର । ସବୁ ରେଜେଷ୍ଟ୍ରି ଡାକ ଯୋଗେ । ରେଜେଷ୍ଟ୍ରି ଡାକ ମାସୁଲ କେତେ କିରେ... ? ପୁଣି ମୁଣିରେ ବନ୍ଧା ବନ୍ଧି କରି ଡାକଘରକୁ ଯାଇ ସିଠାମ କିଣି ପଠେଇବାର ଶ୍ରମ ? ଏ କି ଶ୍ରଦ୍ଧା ବଳିଛି ମୋ ପାଇଁ ? ବନ୍ଧୁ ପାଇଁ ବନ୍ଧୁର ଏଇ ଯୋଉ ନିଷ୍ଠା କାହାଠୁ ମିଳିବ ? କ'ଣ ନା: ନଟୀ ବିନୋଦିନୀ ମଞ୍ଚ ନାୟିକାର ଜୀବନୀକୁ ନେଇ ମୁଁ ଉପନ୍ୟାସ ଲେଖିବି । ତା' ମତରେ ଗୋଟିଏ ଦୁଃଖିନୀ ନାରୀ ଚରିତ୍ରର ମରମ ବେଦନାକୁ ମୁଁ ଭଲ ଭାବେ ଫୁଟେଇ ପାରିବି । କିନ୍ତୁ ମୁଁ ଡରିଲି । ବଙ୍ଗଳାର ନାୟିକା, ପୁଣି ସେଥିରେ ଷ୍ଟାର୍ ଥିଏଟର୍, ଯୋଉ ବିଷୟରେ ମୁଁ କିଛି ଜାଣିନି, ଅନ୍ନପୂର୍ଣ୍ଣା ଓଡ଼ିଶା କି ଜନତା ଥିଏଟର୍ସକୁ ଛାଡ଼ି ମୁଁ ଷ୍ଟାର୍ ଥିଏଟର୍‌ର ନାୟିକା ବିନୋଦିନୀ ଦାସୀ କଥା ଲେଖିବି ? ଖଳଲୋକ ସିଧା ସଳଖ ନଦେଖି ଓଲଟା ଦେଖିବେ । ଖଞ୍ଜ ବୁଝିବେ । ଠାକୁର ଠାକୁରାଣୀ, ପୌରାଣିକ ଚରିତ୍ର ନେଇ ନାନା ଉପନ୍ୟାସ, କାବ୍ୟ-କବିତାକୁ ଆପଣାର କରି ବାହାବା କରିବେ । କିନ୍ତୁ ନଟୀ ବିନୋଦିନୀ ? ଫୁଃ... । ପୁଣି ବଙ୍ଗଳା ଥିଏଟର । ଡବଲ୍ ଫୁଃ... ଫୁଃ... !

ସୁରେଶ ତ ଚିତ୍ର ଆଙ୍କୁଥିଲା, ଗବେଷକ, ସାହିତ୍ୟିକ ଥିଲା । ନାନା କଣ୍ଢେଇଙ୍କୁ ଆଣି ସଂପାଦି ଗୋଟାଏ କଣ୍ଢେଇ ଘର କରିଥିଲା । ମାଲିକ ନୁହେଁ, ବାପା... ବାପା..., ବାପା ତ ଚାଲିଗଲା । କାଚ ଆଲ୍‌ମାରିରେ କଣ୍ଢେଇମାନେ ଏଇନା କ'ଣ କରୁଥିବେ ? ସେମାନେ ମୁଣ୍ଡ କୋଡ଼ି ବାହୁନୁଥିବେରେ ଟୁବ... । ସେମାନେ ଭୋ'... ଭୋ' ଡକା ପାରି ବାପର ସଜାକୁ ସଜାଲୁ ଚାହିଁ ଅନ୍ଧ ହୋଇଯାଉଥିବେ । ଆଉ ଆମେ ଜୀଅନ୍ତା କଣ୍ଢେଇମାନେ ଏଇନା ବା କ'ଣ କରିପାରିବୁ ?

ଟୁବ... ! ତୁ ମୋ ପାଖକୁ ଆସିଛୁ । ଆସିବୁ । ଅଜୟ ଆସିବ । ସୂର୍ଯ୍ୟ ଆସିବ । ଶୁଭ୍ରାଂଶୁ, ସଞ୍ଜୟ ଆସିବ । ଦେବାଶିଷ, ତପନ ଆସିବ । ସରୋଜ ବି ଆସିବ । ସତ୍ୟାନାଶଠୁ ଆରମ୍ଭ କରି ଆଦିତ୍ୟ, ଜ୍ଞାନ ଆସିବେ ।

ବହୁତ ବାଟ ! ବହୁତ ବାଟ !! ଓଃ... !

କିନ୍ତୁ ସୁରେଶ ଆଉ ଆସିବନି ।

ମୁଁ ଥକ୍କା ମାରି ଚାହିଁ ବସିଥିବି, ତା' ଫେରନ୍ତା ବାଟକୁ ଚାହିଁ । କିନ୍ତୁ ସିଏ ଆଉ କେବେ ବି ଥରେ ଆସିବନି ।

ମୁହଁ ଫେରେଇ ଥରେ ମାତ୍ର ଚାହିଁବନି ।

ମୋ ଘରେ ଆଉ ଆଲୁଅ ଉଜ୍ଜଳି ଉଠିବନି ।

ଆଃ... !

ଟୁବ... ! ଆଃ... !

ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କର ସବୁ କଣ୍ଢେଇମାନେ ଭଲରେ ରୁହନ୍ତୁ । ◼

**କୁଶପଙ୍ଗୀ, ବାଙ୍କି, କଟକ**
**ମୋ:୯୪୩୭୨୦୪୮୨୪**



# ଅନନ୍ୟ ପ୍ରତିଭାଧର ସୁରେଶ

ଧୀର ମଲ୍ଲିକ

କଳା, ସାହିତ୍ୟ, ବିଶେଷକରି ନାଟକର ଲକ୍ଷ ହେଲା ସମଗ୍ର ସମାଜକୁ ଭାଇଚାରାର ରଜ୍ଜୁରେ ବାନ୍ଧିରଖି ଏକ ଜାତି, ଧର୍ମ, ଭାଷା ନିର୍ବିଶେଷରେ ନିରପେକ୍ଷ ସମାଜ ଗଠନ କରିବା ।

ଏହି ସତ୍ୟର ପ୍ରକୃତ ବାହକ ଥିଲେ ବନ୍ଧୁ ସୁରେଶ । ସବୁ ଶ୍ରେଣୀର କଳାକାରମାନଙ୍କ ସହ ସେ ନିର୍ଦ୍ଦୋନ୍ଦରେ ମିଶିଯାଉଥିଲେ ଆନ୍ତରିକତାର ସହ ।

ଯେକୌଣସି ନାଟକ ହଉ ସେ ଏକାଗ୍ରତାର ସହ ଦେଖି, ଅତି ନିଖୁଣ ସମୀକ୍ଷା କରି ତାଙ୍କର ସୃଜନଶୀଳ ଚିନ୍ତାଧାରାର ସ୍ୱାକ୍ଷର ଛାଡ଼ିଯାଇଛନ୍ତି ବହୁ ପତ୍ର ପତ୍ରିକାରେ ।

ସେ ଏକାଧାରାରେ ଗାଳ୍ପିକ, କବି, ନାଟ୍ୟକାର, ଗବେଷକ ଓ ବିଶିଷ୍ଟ ସମୀକ୍ଷକ ଭାବେ ସମଗ୍ର କଳା ଜଗତରରେ ପ୍ରିୟ ଭାଜନ ହୋଇପାରିଥିଲେ ।

ଶତାବ୍ଦୀର କଳାକାରର ସେ ଥିଲେ ଜଣେ ଶୁଭେଚ୍ଛୁ, ପ୍ରତ୍ୟେକ ନାଟକ ଦେଖି ଆମକୁ ଅପ୍ରିୟ ସତକଥା କହି, ଆମର ଅଧିକ ନିକଟତର ହୋଇପାରିଥିଲେ ।

ଆମର ଜାତୀୟ ବହୁଭାଷୀ ନାଟକ ଉତ୍ସବରେ ପ୍ରକାଶିତ, ପ୍ରତ୍ୟେକ ସ୍ମରଣିକାର, ୧୫ବର୍ଷ ଯାଏ ସେ ଥିଲେ ମୁଖ୍ୟ କର୍ଣ୍ଣଧାର । ଲେଖା ସଂଗ୍ରହଠାରୁ ପ୍ରୁଫ୍ ରିଡ଼ିଙ୍ଗ୍ ପର୍ଯ୍ୟନ୍ତ ସେ ସବୁକାମ ବିନାଦ୍ୱିଧାରେ କରୁଥିଲେ । ସେ ପ୍ରସ୍ତାବ ଦେଉଥିଲେ, ଧିର ଭାଇ, ଶତାବ୍ଦୀର କଳାକାର ଉପରେ ଏକ ଡକ୍ୟୁମେଣ୍ଟାରୀ ଓ ୩୮ ବର୍ଷର ଇତିହାସକୁ ନେଇ ଏକ ବହି ପ୍ରକାଶ କରିବା । ତାହାର ଦାୟିତ୍ୱ ମୁଁ ନେବି ।

କିନ୍ତୁ ଦୁଃଖର ବିଷୟ ଆମେ ସେପରି ଜଣେ ଗୁଣି ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱ ପାଇବା ସମ୍ଭବ ନୁହେଁ । ସେ ଶୂନ୍ୟସ୍ଥାନ ସବୁବେଳେ ଶୂନ୍ୟସ୍ଥାନ ହେଇ ରହିଥିବ ।

ତାଙ୍କର ହସହସ ମୁହଁ, ସରଳ ନିଷ୍କପଟ ବ୍ୟବହାର ପାଇଁ, ସମଗ୍ର କଳା ଜଗତରେ ସେ ଜଣେ ନିର୍ବିବାଦୀୟ ସଂସ୍କୃତି ବନ୍ଧୁ ହୋଇପାରିଥିଲେ ।

ତାଙ୍କର ଅକସ୍ମାତ୍ ବିୟୋଗ ଆମ ସମସ୍ତଙ୍କ ପାଇଁ ଅପୂରଣୀୟ କ୍ଷତି ପହଞ୍ଚାଇଛି ।

**ତାଙ୍କର ଅଧୁରା କାମକୁ ପୂରଣ କରିବା ପାଇଁ ଆମେ ଅପେକ୍ଷା କରିଛୁ ଆଉଜଣେ ସୁରେଶକୁ । କେବେ, କେତେବେଳେ ଆସିବେ, ସ୍ୱପ୍ନରେ ନା ସ୍ୱଦେହରେ ସେହି ସମୟ ହିଁ କହିବ ।** ■

**ନାଟ୍ୟ ନିର୍ଦ୍ଦେଶକ**



# ଏମିତି କ'ଣ କେହି ଚାଲିଯାଏ ସୁରେଶ ?

ଅଧ୍ୟାପକ ବିଶ୍ୱରଞ୍ଜନ

ଏଗାର ତାରିଖର ସନ୍ଧ୍ୟା । ୨୦୧୪ ବର୍ଷ ଆରମ୍ଭରେ ତୁମ ସହିତ ପ୍ରଥମ ସାକ୍ଷାତ ଏଇ ସନ୍ଧ୍ୟାରେ ତୁମ ସ୍ୱର ମାଧ୍ୟମରେ । ଫୋନ୍ କରିଥିଲ- 'ସାର୍, ମୁଁ ସୁରେଶ ବଳବନ୍ତରାୟ...' ତୁମ ନାଁ ଶୁଣି ମୁଁ ପ୍ରଥମେ ହସିଲି କିଛି ସମୟ ସେଇ ଫୋନ୍‌ରେ । ତମେ ବୁଝିପାରିଲ ମୋ ହସର ରହସ୍ୟ । କାରଣ ଯେତେବେଳେ ମୁଁ ତମକୁ ଅପେକ୍ଷା କରିଥାଏ ଏବଂ ତମେ ମୋତେ କଥା ଦେଇଥାଅ, ସେତେବେଳେ ତୁମର ଦେଖାଶୁଣା ନଥାଏ । ଅଥଚ ଆଗରୁ କୌଣସି ସୂଚନା ନଦେଇ ତମେ ଆସି ପହଞ୍ଚିଯାଅ । ସେଦିନ ଫୋନ୍ ଧରିବା ମାତ୍ରେ କହିଲ- 'ସାର୍, ଇ.ଟିଭି.ର ଏକ ସାକ୍ଷାତକାର କାର୍ଯ୍ୟକ୍ରମ ପାଇଁ ମୁଁ ଆପଣଙ୍କ ନାଁ ଦେଇଛି । କାର୍ଯ୍ୟକ୍ରମର ସଂଯୋଜିକା କଳ୍ପନା ଆପଣଙ୍କୁ ଫୋନ୍ କରିବ । ଆପଣ ନିଶ୍ଚୟ ଯିବେ । କିଛି ସମୟ ପରେ କଳ୍ପନାଙ୍କ ଫୋନ୍ ବାର୍ତ୍ତା ପାଇଲି । 'ଆପଣଙ୍କ ପସନ୍ଦ' କାର୍ଯ୍ୟକ୍ରମରେ ବ୍ୟକ୍ତି ବିଶେଷଙ୍କ ସହ ଏକଘଣ୍ଟାର ସାକ୍ଷାତ- ଆଲୋଚନା । ସେଇ ପର୍ଯ୍ୟାୟରେ ମୋର ସାକ୍ଷାତକାର । ବାସ୍, ଦିନକ ପରେ ୧୩ ତାରିଖ ଉପରବେଳା ସାକ୍ଷାତକାର ପାଇଁ ଷ୍ଟୁଡ଼ିଓରେ ପହଞ୍ଚିଲି । ଘରକୁ ଫେରିଲି ସନ୍ଧ୍ୟା ଛ'ଟାରେ । କିଛି ସମୟ ପରେ ତୁମକୁ ଫୋନ୍ କରି ସେଇକଥା କହିଥାଆନ୍ତି । ମାତ୍ର ମୁଁ ତୁମକୁ ଫୋନ୍ କରିବା ପୂର୍ବରୁ ତୁମ ସମ୍ବନ୍ଧରେ ଅବିଶ୍ୱାସ୍ୟ ସାଥିଟିଏ ଆସି ପହଞ୍ଚିଲା- ଯାହା ଏବେ ମଧ୍ୟ ଗ୍ରହଣ କରିବାକୁ କେହି ପ୍ରସ୍ତୁତ ନୁହନ୍ତି । ରାତି ଆଠଟାରେ 'ସାହାଣମେଲା' ଦୈନିକୀର ସମ୍ପାଦକ ଦେବେନ୍ଦ୍ର ଦାଶ ଫୋନ୍ କରି ଜଣାଇଲେ- 'ସାର୍ ! ସୁରେଶ ବଳବନ୍ତରାୟ ଚାଲିଗଲେ- କଳିଙ୍ଗ ହସ୍‌ପିଟାଲ୍‌ରେ । ଆମେ ଏବେ ଫ୍ରଣ୍ଟ୍ ପେଜ୍‌ରେ ନିୟୁକ୍ତ କରେଇବାକୁ ଯାଉଛୁ ।' ୧୧ ତାରିଖ ସନ୍ଧ୍ୟାରୁ ୧୩ ତାରିଖ ସନ୍ଧ୍ୟା- ତା' ଭିତରେ କେତେବେଳେ କଳିଙ୍ଗ ହସ୍‌ପିଟାଲ- ପୁଣି ହସ୍‌ପିଟାଲ୍‌ରୁ ସ୍ୱର୍ଗଦ୍ୱାର- ମୁଁ କିଛି ବୁଝିପାରିଲି ନାହିଁ । ପରେ ପୁରା ଖବର ଜାଣିଲି ।

ଏମିତି କ'ଣ ହୁଏ ସୁରେଶ ?

୨୦୧୩ ବିଦାୟ ନେବାବେଳକୁ ଟ୍ରେନ୍ ରୂପୀ ଦୈତ୍ୟ ଆସି ଟାଣିନେଇଗଲା ଜଗଦୀଶକୁ । ଆଉ ଏ ବର୍ଷ ଆରମ୍ଭରେ ତମେ ଶୂନ୍ୟରେ ଶୂନ୍ୟରେ ମିଳେଇଗଲ ମହାଶୂନ୍ୟତା ଭିତରେ । ପତ୍ରିକାରେ ପ୍ରକାଶିତ ନିଜର 'ଭାବଭଉଁରୀ'ରେ ଠାଏ ଲେଖିଥିଲି-

"ପାଣି ଫୋଟକାର ଜୀବନ ଆମର / ଏଇଅଛି ଏଇ ନାହିଁ,
ତେଜି ରାଗରୋଷ / ବାଦ ଓ ବିବାଦ / ଯିବା ଖାଲି ଭଲ ପାଇ ।"

ମାତ୍ର ଲେଖିଥିବା କଥାକୁ ନିଜେ ଶାନ୍ତ, ସହଜ ଭାବରେ ଗ୍ରହଣ କରିନେବା ଏତେ ସହଜ ନୁହେଁ ।

ଆଖି ଆଗରେ ଭାସିଉଠୁଛି ତୁମର ଚେହେରା । କଳା ମୁଗୁନି ପଥରର ଦେହ । ଋହାଣି ଓ ଚରିତ୍ରରେ ବି ତମେ ଥିଲ କଳାକାର । ପାନଖିଆ ବହଳ ଓଠରେ ତମର ଲାଖିଥାଏ ଧାରେ ହସ । ସମସ୍ତଙ୍କୁ ଆପଣେଇ ନେବାର ଭାବ । କଥା କଥାକେ ରଙ୍ଗରସ, ସିରିଅସ୍ ଆଲୋଚନାରୁ ଗୁଲିଗପ । ଖଟି ଆସରର ତମେ ଥିଲ ନାଟୁଆ ନାଗର । ସଞ୍ଜ ହେଲେ ପୁରୁଣା ବସ୍‌ଷ୍ଟାଣ୍ଡରେ ସମଧର୍ମା କବି ଓ ଲେଖକ ବନ୍ଧୁ, ପୁଣି ସକାଳବେଳା ତୁମ ଅଞ୍ଚଳର ପ୍ରାତଃଭ୍ରମଣକାରୀ କବି ସୌରୀନ୍ଦ୍ର ବାରିକ, ଦିନନାଥ, ପ୍ରୀତମ, ବାସୁଦେବ ସାହୁ, ବିଜୟ ମହାନ୍ତି ପ୍ରଭୃତିଙ୍କ ସହ । ସଭିଙ୍କ ମନ ଭିତରେ ଆସନ ପାତି ବସିଥିବା ସଭିଙ୍କ ପ୍ରିୟ ତମେ ସୁରେଶ ବଳବନ୍ତରାୟ ।

ସତୁରି ଦଶକର ମଧ୍ୟଭାଗରୁ ସମ୍ଭବତଃ ତୁମ ସହିତ ମୋର ପରିଚୟ । ପୁରୀ 'ଉଷାମହଲ' ବସା ଠିକଣାରେ କେତେ ଯେ ଚିଠି ତମର- ବିକ୍ଷିପ୍ତ ଅବସ୍ଥାରେ କେଉଁ ଫାଇଲ୍ ବା ବାକ୍ସ ଭିତରେ ସବୁ ରହିଗଲା, ଖୋଜିବାରେ ଲାଗିଛି । ପୁରୀ ଠିକଣାରେ ଏ ଚିଠି ଲେଖିଲାବେଳେ ସୁରେଶ, ତମେ ଋକିରି କିମ୍ବା ସଂସାରୀ ଜୀବନ ଭିତରକୁ ପ୍ରବେଶ କରିନଥିଲ । ବହୁବର୍ଷ ପରେ, ମୋ ଅଧ୍ୟାପକ ଜୀବନର ଶେଷ ପର୍ବରେ ଭୁବନେଶ୍ୱରରେ ଆସି ରହିଲା ପରେ ତୁମ ସହିତ ଦେଖା । ତମେ ସେତେବେଳେ କେନ୍ଦ୍ର ସରକାରଙ୍କ ଅଧୀନସ୍ଥ ଜଣେ ପଦାଧିକାରୀ, ଘରୋଇ ଜୀବନରେ ଜଣେ ପତି ଓ ପିତା ଏବଂ ସାଧାରଣ ଜନଜୀବନରେ ଜଣେ ସାହିତ୍ୟ ସ୍ରଷ୍ଟା, କଳାକାର, ସଂଗ୍ରାହକ, ଗବେଷକ ତଥା ସଙ୍ଗଠକର ଭୂମିକାରେ ବେଶ୍ ପରିଚିତ ଓ ପ୍ରତିଷ୍ଠିତ । ପ୍ରସିଦ୍ଧ ତନ୍ତ୍ରପୀଠ ଚଉଷଠି ଯୋଗିନୀ ମନ୍ଦିର ସମ୍ପର୍କରେ ତୁମର ଗବେଷଣା ଓ ପୁସ୍ତକ ପ୍ରକାଶନ ଏବଂ ଏଇ କେତେବର୍ଷ ହେଲା ସେଠାରେ ନୃତ୍ୟୋତ୍ସବର ଆୟୋଜନ ତୁମର ଇତିହାସ ସଂସ୍କୃତି ପ୍ରୀତିର ନମୂନା ହୋଇ ରହିଗଲା । 'ଭୁବନେଶ୍ୱର'କୁ ନେଇ ଏକ ପ୍ରମାଣିକ ପୁସ୍ତକ ମଧ୍ୟ ରଚନା କରିଥିଲ- କିଛିଦିନ ତଳେ କହିଥିଲ, ମୋ ପାଖକୁ ଆସିବ ବହିଟି ନେଇ । ମାତ୍ର କଥା ଦେଇ କଥା ରଖିପାରିଲ ନାହିଁ । ଏବେ ମୋର ସଜଡ଼ା- ଅସଜଡ଼ା ବହିଥାକରୁ ଖୋଜିବାରେ ଲାଗିଛି, ମୋତେ ଉପହାର ଦେଇଥିବା ତୁମର ଗପ ବହିଟି- ଯାହା ଭିତରେ ମୋରି ନାଁ ଦେଇ ମୋ ସମ୍ପର୍କରେ ଗପଟିଏ ମଧ୍ୟ ଲେଖିଥିଲ । 'ଚିଠି'ର ପୁନଃ ପ୍ରକାଶନରେ ତୁମର ଆଗ୍ରହ ଓ ଆନନ୍ଦ ମୁଁ ଲକ୍ଷ୍ୟ କରିଛି । ମାତ୍ର ପ୍ରତିଥର 'ଚିଠି' ପାଇଁ ନିଜର ହେଉ ବା ଅନୁବାଦରେ ହେଉ ଚିଠି ଦେବ ବୋଲି କହି ନିରାଶ କଲାପରେ, ଗତ ପୂଜାସଂଖ୍ୟା ପାଇଁ ନେତାଜୀଙ୍କୁ ଆସି ଦେଇଗଲ ସତ୍ୟଜିତ୍ ରାୟଙ୍କ ଚମତ୍କାର ଚିଠି କେତୋଟିର ଅନୁବାଦ । ପ୍ରକାଶ ପାଇବା ପରେ ତୁମ ଲେଖକୀୟ କପି ତୁମ ପାଖରେ ପହଞ୍ଚିବା ପୂର୍ବରୁ ନିଜେ ଏକାଧିକ କପି କିଣି ବନ୍ଧୁମାନଙ୍କୁ ଉପହାର ଦେଇଥିଲ । ଏବେ ଭାବୁଛି, 'ଚିଠି' ପାଇଁ ପ୍ରତିଶ୍ରୁତି ରକ୍ଷା କରି ତମେ ମୋ ପାଖରେ ଦୋଷମୁକ୍ତ ହୋଇ ଋଲିଗଲ । ଚିଠିରେ ତୁମର ସ୍ୱାକ୍ଷର ଥିଲା ଏଇ ପ୍ରଥମ ଓ ଶେଷ ।

ମାତ୍ର କଥାଥିଲା, ମୁଁ ତୁମ ଘରକୁ ଯିବି । ଦେଖିପାରିବି ତୁମ ଘର ଭିତରେ ତୁମ ଶିଳ୍ପୀ ମନର ସାଜସଜ୍ଜା, କଳାକୃତି, କଣ୍ଢେଇର ମ୍ୟୁଜିୟମ୍ । ମୋ ସାନପୁଅ ବାପୁଜୀ ଥିଲା ତୁମ ପୁଅ ଶୁଭ୍ରରଜତର ସାଙ୍ଗ । ସେ ତୁମ ଘରକୁ ଯାଇଛି- ସେଠୁ ଫେରି ଆମଘରେ ତୁମ ସ୍ୱପ୍ନଗଢ଼ା ଘରର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛି । ତା'ପରେ ତୁମେ କହିଥିଲ, ଦିନେ ଆସି ମୋତେ ତୁମ ଘରକୁ ନେଇଯିବ । ସେଦିନ ଆସିଲ ନାହିଁ । କଥା ଦେଇ କଥା ରଖିଲ ନାହିଁ । ଠକିଦେଇ ଋଲିଗଲ । ଏମିତି କ'ଣ କେହି ଯାଏ ସୁରେଶ ? ଶୁଣିଲି, ତୁମର ରକ୍ତଋପ ଥିଲା । କାହାକୁ କିଛି କହୁନଥିଲ । ତୁମ ଚେହେରାରେ ସ୍ୱତଃସ୍ଫୂର୍ତ୍ତ ହସ ଓ ଜୀବନରସର ଝଲକ ଦେଖି କିଏ କେମିତି ଜାଣିବ ଯେ, ତୁମ ଭିତରେ କେତେ ଋପ ଥିଲା ? ଅଥଚ ସେଇ ଋପ ସମ୍ଭାଳି ନପାରି ତଳେ ପଡ଼ିଗଲ ଯେ, ସେଇ ପଡ଼ିବା ଅବସ୍ଥାରୁ ଆଉ ଉଠିପାରିଲ ନାହିଁ ।

ଅଦ୍ଭୁତ ସତରେ ଏଇ ଜୀବନ- ମରଣର ରହସ୍ୟ । ୧୧ ତାରିଖ ସନ୍ଧ୍ୟାରେ ତୁମ ସ୍ୱର ଶୁଣୁଛି- ୧୩ ତାରିଖ ସନ୍ଧ୍ୟା ବେଳକୁ ସବୁ ଶୂନ୍ୟ । ତମେ ସ୍ମୃତି ପାଲଟିଗଲ । ଘରର ବହିଥାକ ଉପରେ ତୁମେ ଉଠେଇଥିବା ଆମ ଦୁଇଭାଇଙ୍କର ଫଟୋ ଏନ୍‌ଲାର୍ଜ ହୋଇ ଫ୍ରେମ୍ ଭିତରେ ରହିଛି । ମନେପଡୁଛି... ? ଭୁବନେଶ୍ୱର ରାସ୍ତାରେ ଥରେ ଆମେ ଦୁଇଭାଇ ଯାଉଥିଲାବେଳେ ଆମକୁ ଦେଖି ଅଟକେଇ ଆମ ଫଟୋ ନେଇଥିଲ । ତା'ରି କପି ମଧ୍ୟ ଆମପାଖକୁ ପଠାଇଦେଇଥିଲ । ଆମ ଦୁଇ ଭାଇଙ୍କର (ମୁଁ ଓ ବିବୁଧ ରଞ୍ଜନ) ଏଭଳି ଏକତ୍ର ସୁନ୍ଦର ଫଟୋ କେବେ ଆମ ଘରେ ନଥିଲା । ତୁମରି ହାତର କୃତି ଓ ଭଲପାଇବାର ସନ୍ତକ ଏବେ ଆମଘରେ ତୁମ ସ୍ମୃତିର ସ୍ମାରକୀ ହୋଇ ରହିଯାଇଛି । ଦୁଃଖ କେବଳ, ତମେ ସବୁ କଥା ଅଧା ରଖି ଋଲିଗଲ ।

ଏମିତି କ'ଣ କେହି ଋଲିଯାଏ ସୁରେଶ ? ■



# ସ୍ୱପ୍ନ ଦେଖୁ ଦେଖୁ ଚଢ଼େଇଟି ଉଡ଼ିଗଲା

ଜଗଦାନନ୍ଦ

ନିକଟରେ ଏକ ଜରୁରୀ କାମରେ ମୁଁ ଦିଲ୍ଲୀରେ ଥିଲାବେଳେ ହଠାତ୍ ଭୁବନେଶ୍ୱରରୁ ଖବର ପାଇଲି ବନ୍ଧୁ ସୁରେଶ ବଳବନ୍ତରାୟ ଆଉ ନାହାନ୍ତି। କିଛି କ୍ଷଣ ପାଇଁ ବିଶ୍ୱାସ କରିପାରିଲି ନାହିଁ ଏଖବରକୁ ଏବଂ ନିଜକୁ।

ସୁରେଶ ପିଲାଦିନରୁ ମୋର ଜଣାଶୁଣା। ସ୍କୁଲ ଦିନର ନରଣଗଡ଼ ଏନ୍.ସି.ସି କ୍ୟାମ୍ପ ଜୀବନର ଏକ ଅଭୁଲା ଅନୁଭୂତି। ନରଣଗଡ଼ ହେଉଛି ସୁରେଶଙ୍କ ଗାଁ। ଆମ ଗାଁ ମୋଟରୀ ଠାରୁ ଅଳ୍ପ ବାଟ । କ୍ୟାମ୍ପ ଭିତରେ ପରସ୍ପର ସହିତ ଆମ ଦୁହିଁଙ୍କ ମ୍ନରେ ଦେଖା ହୋଇଥିଲେ ବି ସମ୍ପର୍କ ଯୋଡ଼ି ପାରି ନଥିଲୁ। କେମିତି କେଜାଣି ଜଣେ ଅଜଣା ବନ୍ଧୁ ଭାବେ ସୁରେଶ ମୋତେ ଦୂରରୁ ଜାଣିଥିଲେ। ତାପରେ ମୋର କଲେଜ ଜୀବନ ଆରମ୍ଭ ହୁଏ ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ। ତାଙ୍କ ସହ ପ୍ରଥମ ଦେଖାରେ ଅନୁଭବ କରିଥିଲି ସତେ ଯେମିତି ବହୁତ ଦିନର ମୋର ଜଣେ ପୁରୁଣା ବନ୍ଧୁଙ୍କୁ ନିକଟରେ ପାଇଛି !

ତାପରେ ଏକ ନମ୍ବର ହଷ୍ଟେଲରେ ଏକାଠି ରହିବାର ସୁଯୋଗ। କେତେ ଦିନ, କେତେ ରାତିର ଅନ୍ତରଙ୍ଗ ମୁହୂର୍ତ୍ତ କାଟିବା ପରେ ତାଙ୍କ ଭିତରେ ଲୁଚି ରହିଥିବା ପ୍ରତିଭା ଆଉ ଅଛପା ରହେନି। ସ୍ୱରଚିତ କବିତା, ଗଳ୍ପ ଏବଂ ସୃଜନଶୀଳ ସାହିତ୍ୟକୁ ନେଇ ସୁରେଶ ଖୁବ୍ କମ୍ ଦିନରେ ଆମ ହଷ୍ଟେଲ ତଥା କଲେଜରେ ସମସ୍ତଙ୍କର ନିଜର ହୋଇଯାନ୍ତି। ଅନ୍ୟ ସାହିତ୍ୟିକ ଏବଂ କଳାକାରଙ୍କୁ ନେଇ ଏକ ସୃଜନଶୀଳ ଗୋଷ୍ଠି ଗଠନ କରିବାରେ ଆଗେଇ ଆସନ୍ତି ସେ । ଏସବୁ ଭିତରେ ନିଜର ପାଠ ପ୍ରତି ଥିବା କର୍ତ୍ତବ୍ୟ ଓ ନିଷ୍ଠାକୁ ସେ ଅବହେଳା କରିଥିବା ମୁଁ କେବେ ଦେଖିନାହିଁ ।

ଛାତ୍ରାବାସ ପରିଚାଳନାରେ ଛାତ୍ରମାନଙ୍କ ଭୂମିକା ଏବଂ ସହପାଠୀ ହିସାବରେ ସୃଜନଶୀଳ ଦୁନିଆଁକୁ ଲେଖା ମାଧ୍ୟମରେ ପ୍ରକାଶ କରିବାରେ ସୁରେଶ ଆମ ସମୟର ଜଣେ ଅଦ୍ୱିତୀୟ ପ୍ରତିଭା। ବିଶେଷକରି 'ଶାଶ୍ୱତ' ଓ 'ମରାଳିକା' ରେ ସେ ତାଙ୍କର ଉଚ୍ଚକୋଟିର ଲେଖା ପ୍ରକାଶନ ଅବ୍ୟାହତ ରଖିଥିଲେ । ସେ ସବୁ ଲେଖା ବର୍ତ୍ତମାନ ଯେତେ ଖୋଜିଲେବି ଦୁର୍ଲ୍ଲଭ। ଭୁବନେଶ୍ୱରର ନାଟ୍ୟ ଚେତନା ଠାରୁ ଆରମ୍ଭ କରି କ୍ରିଏଟିଭ କର୍ଣ୍ଣର ଏବଂ ସାହିତ୍ୟ ଜଗତର ସବୁ ଖବର ଜାଣିବାର ମୋ ପାଇଁ ଏକମାତ୍ର ଉତ୍ସ ସୁରେଶ ଯେ ଆଉ ନାହାନ୍ତି, ଏହା ମୁଁ ସହଜରେ ଗ୍ରହଣ କରିପାରିବି ବା କେମିତି।

ମୋ ଗାଁ ପାଖରେ ଥିବା ଅରାଗଡ଼ ବୁଦ୍ଧ କୀର୍ତ୍ତୀରାଜିର ପୁନଃନିର୍ମାଣ ଏବଂ ତାର ଐତିହ୍ୟକୁ ଲୋକ ଲୋଚନକୁ ଆଣିବାର ପ୍ରୟାସ ପାଇଁ ମୋର ଅନୁରୋଧ ରକ୍ଷାକରି ଥରେ ସକାଳ ୬ଟାରେ ସେ ପର୍ଯ୍ୟଟନ ସଚିବଙ୍କ ସହିତ ଯିବା ପରେ ସେ କଥା ଦେଇଥିଲେ ଏ ସମ୍ପର୍କରେ ବହିଟିଏ ଲେଖିବା ପାଇଁ। ଚୌଷଠି ଯୋଗିନୀ ଉତ୍ସବକୁ ସେ ମୋତେ ନିମନ୍ତ୍ରଣ ପତ୍ର ପଠାଇ ପାରି ନଥିବାରୁ ନିଜ ଆଡୁ ଅନୁତପ୍ତ ହେବା ସହ ଅଡ଼ି ବସିଥିଲେ ସପରିବାର ଆସିବା ପାଇଁ ।

ସୁରେଶଙ୍କ ଅନୁରୋଧ କ୍ରମେ ମୁଁ ଯିବାକୁ କଥା ଦେଇଥିଲି ଓ ସେଠାକୁ ଯିବା ପାଇଁ ମନଭିତରେ କାର୍ଯ୍ୟକ୍ରମ ମଧ୍ୟ ସ୍ଥିର କରିସାରିଥିଲି । ମୁଁ ଦିଲ୍ଲୀରୁ ଫେରିଲା ପରେ ଆମେ ସେଠାକୁ ଯାଇଥାଆନ୍ତୁ ଓ ସେ ଆମକୁ ଚୌଷଠି ଯୋଗିନୀ, କଳା, ସାହିତ୍ୟ ଏବଂ ସଂସ୍କୃତି ସମ୍ପର୍କରେ ବୁଝାଇଥାଆନ୍ତେ। ମାତ୍ର ବିଧିର ବିଡ଼ମ୍ବନା - ଦିଲ୍ଲୀରେ ଥାଇ ତାଙ୍କର ବିୟୋଗ ଖବର ଶୁଣିଲି । ମୋ ପାଇଁ ଅତ୍ୟନ୍ତ ଦୁଃଖ ଓ ବହୁତ ବଡ଼ ଧକ୍କା ଥିଲା । ସୁରେଶ ମୋତେ ଠକି ଚାଲିଗଲେ ।

କଳା, ସାହିତ୍ୟ, ଓ ସଂସ୍କୃତି ସହିତ ସମାଜକୁ ଯୋଡୁଥିବା ଏବଂ ସେସବୁର ବିକାଶ ପାଇଁ ସ୍ୱପ୍ନ ଦେଖୁଥିବା ମୋର ପ୍ରିୟ ବନ୍ଧୁ ସୁରେଶ ଆଜି ଆଉ ପାରିରେ। ସେ ଏତେ ଶୀଘ୍ର ଆମକୁ ଛାଡ଼ି ଚାଲିଗଲେ, ଏକଥା ଭାବି ହେଉନି। ଆତ୍ମା ଅମର ଓ ଅବିନାଶୀ। ସୁରେଶଙ୍କ ଅମର ଆତ୍ମାର ସଦ୍‌ଗତି ହେଉ , ଏହାହିଁ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା। ■



# ଆସର ଭାଙ୍ଗିଗଲା

ଗୌରହରି ଦାସ

ସୁରେଶ ବଳବନ୍ତରାୟଙ୍କ ମୁହଁ ମନେପଡ଼ିଲେ ଚଇତ୍ରର ଦମକାଏ ଚଞ୍ଚଳ ଚଇତାଳି କଥା ମନେପଡ଼ିଯାଏ । ସବୁବେଳେ ବ୍ୟସ୍ତ, ସବୁବେଳେ ନୂଆ କିଛି କହି ଚମକେଇ ଦେବାର ଆଗ୍ରହ । ପ୍ରାଣୋଚ୍ଛଳ, ସ୍ୱପ୍ନୋଚ୍ଛଳ ଏବଂ ରସୋଚ୍ଛଳ ଗୋଟେ ପରିପୂର୍ଣ୍ଣ ଆସର ସେ, ଯାହା ଅବେଳରେ ଭାଙ୍ଗିଗଲା ।

ଦୀର୍ଘ ପଚିଶ କି ଛବିଶ ବର୍ଷର ସଂପର୍କ, ସେଇଟି କେମିତି ଆରମ୍ଭ ହେଲା ଭାବିଲେ ସ୍ୱପ୍ନ ପରି ମନେହେଉଛି । ହଠାତ୍ ଦିନେ ସୁନ୍ଦର କଲମ ଗୋଟେ ଏବଂ ଚମତ୍କାର ରାଇଟିଙ୍ଗ୍ ପ୍ୟାଡ୍ ଧରି ଭୁବନେଶ୍ୱର ନୂଆପଲ୍ଲୀର 'ସମ୍ବାଦ' ଦପ୍ତରରେ ହାଜର ହୁଅନ୍ତି ସୁରେଶ ବାବୁ । ଲେଖାଟିଏ ପାଇଁ ଅଭିନନ୍ଦନ ଜଣାନ୍ତି ଏବଂ ଉପହାର ଭାବେ ଏଗୁଡ଼ିକ ବଢ଼େଇ ଦିଅନ୍ତି ହାତକୁ । ଠୋ ଠୋ ହସ, ଠୋକ୍‌ଠୋକ୍ କଥାବାର୍ତ୍ତା । ମୋ ପାଖରୁ ପୁଣି ଯାଆନ୍ତି ଆଉ ଜଣଙ୍କ ନିକଟକୁ, ତାଙ୍କ ଲାଗି ଦାମୀ ସିଗାରେଟ୍ ପ୍ୟାକେଟ୍‌ର ଉପହାର । ତାହାପରେ ଆଉ କାହାକୁ କ'ଣ । ମୁଁ ଭାବିଲି ଇଏ କ'ଣ ବଡ଼ଦିନ ଗପର ସେଇ ସାନ୍ତାକ୍ଲସ୍ - ଯିଏ ସଭିଙ୍କ ପାଇଁ ଭଳିକି ଭଳି ଉପହାର ଆଣି ଆସିଥାଆନ୍ତି । ହଁ, ସେଇପରି ସ୍ନେହୀ ମଣିଷ ସେ ଥିଲେ । ଆଜି ସେ ଚାଲିଗଲା ପରେ ଶୁଣୁଛି, ଏମିତି ଶହ ଶହ ବନ୍ଧୁଙ୍କୁ ସେ ସେମାନଙ୍କର ମନଲାଖି ଜିନିଷ ଉପହାର ଦେଇଥିଲେ । ସବୁରି ଦୁର୍ବଳତା ଜାଣିଥିଲେ ସେ । ଅନ୍ୟ ପ୍ରତି ସେତିକି ଭଲ ପାଇବା ନଥିଲେ ଜଣେ ତାହାର ରୁଚି କି ଆଗ୍ରହ କଥା ଜାଣିପାରନ୍ତା ନାହିଁ ।

ସୁରେଶ ବଳବନ୍ତରାୟ ଥିଲେ ଜଣେ ସଂପୂର୍ଣ୍ଣ ସୃଜନ ପୁରୁଷ । ସାହିତ୍ୟ, ସଙ୍ଗୀତ, ଅଭିନୟ, ଲୋକକଳା, ଚିତ୍ର ଏବଂ ସଂଗଠନ – ସବୁ ବିଭାବକୁ ସ୍ପର୍ଶ କରିଥିଲା ତାଙ୍କର ସୃଜନ ସାଧନା । ଏଭଳି ଜଣେ ଦ୍ୱିତୀୟ ବନ୍ଧୁଙ୍କୁ ମୁଁ କାହିଁ ଭେଟୁନାହିଁ, ଯିଏ କଣ୍ଢେଇରୁ ନେଇ କଳା ପ୍ରଦର୍ଶନୀ, ଚଉଷଠି ଯୋଗିନୀ ନୃତ୍ୟୋତ୍ସବରୁ ନେଇ ନାଟକ ମହୋତ୍ସବର ଆୟୋଜନ - ଏଭଳି ବହୁବିଧ କାର୍ଯ୍ୟ କରିପାରୁଥିବେ । ରାଜଧାନୀରେ ପ୍ରଥମ ଥର ପାଇଁ ଗୋଟେ 'କଫି ହାଉସ୍'ର ପରିକଳ୍ପନା ସିଏ ହିଁ କରିଥିଲେ । ଭାବୁଛି, ଖୁବ୍ ତରତରରେ ଥିଲେ ସୁରେଶ ବାବୁ । ସେଥିପାଇଁ ସବୁ କାମ ଏତେ ଶୀଘ୍ର ଶୀଘ୍ର କରିପାରୁଥିଲେ, କରିଗଲେ ।

ଅନେକ ସମୟରେ ତାଙ୍କ ସହ ଦେଖାହୁଏ ସାହିତ୍ୟ ସଭାରେ ନହେଲେ ରବୀନ୍ଦ୍ର ମଣ୍ଡପ ଆଗରେ । ସୁନ୍ଦର ଢଙ୍ଗରେ ପଞ୍ଜାବିଟିଏ ପିନ୍ଧିଥିବେ – କବିତା ପାଠ ଉତ୍ସବକୁ ଯିବା ଭଙ୍ଗୀରେ । ଦେଖୁ ଦେଖୁ କୋଳେଇନେବେ । ଚିନାବାଦାମ କି ମଟର ଖାଉଥିଲେ ହାତକୁ ବଢ଼ାଇଦେବେ । ଯାହା କିଛି କହିବାର ଥିବ ସ୍ପଷ୍ଟ ଭାବରେ କହିବେ – ନିନ୍ଦା, ପ୍ରଶଂସା, ସମାଲୋଚନା । ମନରେ ଛଳନା ନାହିଁ, ଦ୍ୱିଧା ନାହିଁ ।

ବ୍ୟକ୍ତିଗତ ଭାବରେ ସେ ମୋର ଘନିଷ୍ଠ ବନ୍ଧୁ ଥିଲେ । ୨୦୦୧ ମସିହାରେ, 'ଶତାବ୍ଦୀର କଳାକାର' ଦ୍ୱାରା ମୋର ନାଟକ 'ଅପରାଧ' ରବୀନ୍ଦ୍ର ମଣ୍ଡପରେ ମଞ୍ଚସ୍ଥ ହୋଇଥାଏ । କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ଏକ ପାଣ୍ଡୁଲିପି କର୍ମଶାଳା ଦ୍ୱାରା ଆୟୋଜିତ କାର୍ଯ୍ୟକ୍ରମରେ ଏହି ନାଟକ ପ୍ରଥମ ଯୋଗ୍ୟ ବିବେଚିତ ହୋଇଥାଏ । ଏଥିପାଇଁ କିଛି ପୁରସ୍କାର ଏବଂ ମଞ୍ଚାୟନ ଲାଗି 'ଶତାବ୍ଦୀର କଳାକାର'କୁ କିଛି ପାରିତୋଷିକ କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ମିଳିଥାଏ । ଏଇଟା ହିଁ ଥାଏ ଅନେକଙ୍କର ଗାତ୍ରଦାହର କାରଣ । ପାଣ୍ଡୁଲିପି ପ୍ରତିଯୋଗିତାରେ ଭାଗ ନେଇ ପଛକୁ ରହିଯାଇଥିବା ନାଟ୍ୟକାର ଏବଂ ମଞ୍ଚାୟନ ନିମନ୍ତେ ଆଗ୍ରହୀ କିଛି ନିର୍ଦ୍ଦେଶକ ସେତେବେଳେ ମୋତେ ଯେଉଁ ଭଳି ସମାଲୋଚନା କଲେ ମୁଁ ତାହା ଆଦୌ

ମନେପକାଇବାକୁ ଚାହୁଁନାହିଁ। ସୌଭାଗ୍ୟବଶତଃ ସବୁ ପ୍ରତିଷ୍ଠିତ ନାଟ୍ୟକାର ଓ ନାଟ୍ୟ ନିର୍ଦ୍ଦେଶକ ଯଥା – ମନୋରଂଜନ ଦାସ, ବିଶ୍ୱଜିତ ଦାସ, ଅନନ୍ତ ମହାପାତ୍ର, ଜଗନ୍ନାଥ ପ୍ରସାଦ ଦାସ, ଲଲାଟେନ୍ଦୁ ରଥ, ବିଜୟ କୁମାର ଶତପଥୀ, ଚନ୍ଦ୍ରଶେଖର ନନ୍ଦ ଏବଂ ସୁବୋଧ ପଟ୍ଟନାୟକ (ନାଟ୍ୟଚେତନା) ପ୍ରମୁଖ ମୋତେ ସମର୍ଥନ କରିଥିଲେ। ତେବେ ସବୁଠୁ ଅଧିକ ସମର୍ଥନ କରିଥିଲେ ବନ୍ଧୁ ସୁରେଶ କୁମାର ବଳବନ୍ତରାୟ। ଭୁବନେଶ୍ୱରରୁ ପ୍ରକାଶ ପାଉଥିବା 'ସ୍ୱାଭିମାନ'ର ୨୦୦୧ ମାର୍ଚ୍ଚ ୭ ତାରିଖ ସଂଖ୍ୟାରେ ନାଟକ ''ଅପରାଧ ଓ ଅସୁସ୍ଥ ସମାଲୋଚନା'' ଶିରୋନାମାରେ ଏକ ପ୍ରବନ୍ଧ ଲେଖି ସେ ସମାଲୋଚକମାନଙ୍କୁ ଯେଉଁଭଳି ଜବାବ୍ ଦେଇଥିଲେ ତାହା ମୁଁ ଭୁଲିପାରିବି ନାହିଁ। ନିନ୍ଦୁକମାନଙ୍କ ଉଦ୍ଦେଶ୍ୟରେ ପ୍ରଶ୍ନଟିଏ ସେ ପଚାରିଥିଲେ, ''ଆମେ ମାଛି ନହୋଇ କ'ଣ ମହୁମାଛି ହୋଇପାରିବା ନାହିଁ?'' ମୁଁ ତାଙ୍କର ସେହି ଲେଖାଟିକୁ 'ଅପରାଧ' ନାଟକର 'ନିଜ କଥା'ରେ ପୁନଃପ୍ରକାଶ କରିଛି।

ଭୁବନେଶ୍ୱର ନିକଟ ହୀରାପୁର ଚଉଷଠି ଯୋଗିନୀ ମନ୍ଦିର କଥା ଓଡ଼ିଶା ବାହାର ଲୋକଙ୍କ ନିକଟରେ ପ୍ରଚାର କରିବା କ୍ଷେତ୍ରରେ ତାଙ୍କର ଏକ ବଳିଷ୍ଠ ଭୂମିକା ରହିଛି। ଏ ସଂପର୍କୀୟ ତାଙ୍କର ଇଂରାଜିରେ ପ୍ରକାଶିତ ବହିଟି ମୋର ଅନେକ କାମରେ ଆସିଛି। ମୋର ଉପନ୍ୟାସ 'କେତେ ରଙ୍ଗର ଜୀବନ'ର ନାୟକ ତମାଳ ନାୟିକା ରାଜଶ୍ରୀଙ୍କୁ ନେଇ ହୀରାପୁର ଯାଉଥିବାବେଳେ ଠାଏ କହିଛି, ''ମୋ ବ୍ୟାଗ୍‌ରେ ବଳବନ୍ତରାୟଙ୍କ ଚଉଷଠି ଯୋଗିନୀ ବହିଟା ଅଛି, ଆପଣ ଦେଖିପାରନ୍ତି।'' ଏଇ ଧାଡ଼ିକ ପଢ଼ି ସୁରେଶ ବାବୁ ମୋତେ କୃତଜ୍ଞତା ଜଣାଇ କହିଥିଲେ, 'ଆପଣ ମୋତେ ଅମର କରିଦେଲେ।' ମୁଁ ସେଦିନ ନମ୍ରତାର ସହ କହିଥିଲି, ଆପଣ କାଠ ପଥରର ପ୍ରତିମାମାନଙ୍କୁ ଭଲ ପାଉଛନ୍ତି, ଯେଉଁମାନେ ଆପଣଙ୍କୁ କୃତଜ୍ଞତା ଜଣାଇବାକୁ ଅସମର୍ଥ। ଆପଣଙ୍କର ସେ କାର୍ଯ୍ୟ ତୁଳନାରେ ମୋର ଏ ସାମାନ୍ୟ ଉଲ୍ଲେଖ କିଛି ନୁହେଁ। ମୁଁ ତ ଆପଣଙ୍କଠାରୁ ପୁଣି ପ୍ରଶଂସା ପାଇଗଲି !''

ସୁରେଶ ବାବୁଙ୍କର ଜ୍ୟେଷ୍ଠ ପୁତ୍ର ଏକଦା 'ସମ୍ବାଦ'ର ଫଟୋଗ୍ରାଫର୍ ସାକ୍ଷାତକାରକୁ ଆସିଥିଲେ। ସେଦିନ ତାଙ୍କର ପ୍ରତିଭା ଦେଖି ମୁଁ ଜାଣିଥିଲି, ତାଙ୍କୁ ବଡ଼ ପରିବେଶ ଦରକାର। ସେ ଏବେ ଭାରତ ସରକାରଙ୍କ 'ଇସ୍ରୋ' ସଂସ୍ଥାରେ କାମ କରୁଛନ୍ତି। କିଛିଦିନ ତଳେ ସୁରେଶ ବାବୁଙ୍କ ସହ ସାକ୍ଷାତ ବେଳେ କହିଥିଲି, ପୁଅ 'ସମ୍ବାଦ'କୁ ଆସିଲେ ନାହିଁ ସିନା, ଆପଣ ଆସିବେ। ସଂପାଦକ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ 'ଷାଠିଏ ଛୁଇଁଲା, ନୂଆ ଜୀବନ ଆରମ୍ଭ ହେଲା' ଯୋଜନା ଆରମ୍ଭ କରିଛନ୍ତି। ଆପଣଙ୍କ ପରି ବହୁମୁଖୀ ପ୍ରତିଭା ଓଡ଼ିଶାରେ ବିରଳ। ଆପଣଙ୍କ ସାନ୍ନିଧ୍ୟ 'ସମ୍ବାଦ'କୁ ଋଦ୍ଧିମନ୍ତ କରିବ। ଶୁଣିଲି, ସେ ମୋର ଏଇ କଥାକୁ ଏକାଧିକ ବନ୍ଧୁଙ୍କ ନିକଟରେ କହି ମୋର ବନ୍ଧୁପଣକୁ ପ୍ରଶଂସା କରିଛନ୍ତି। ମୁଁ ସିନା ପ୍ରଶଂସା ପାଇଲି, ମାତ୍ର ତାଙ୍କ ସାନ୍ନିଧ୍ୟର ସୁଯୋଗ ଜୁଟିଲା ନାହିଁ।

ତାଙ୍କର ପ୍ରତିଟି କାମରେ କଳାତ୍ମକତା ଫୁଟି ଉଠୁଥିଲା। କେଉଁ ପ୍ରକାର କାଗଜ ବ୍ୟବହାର କରିବେ, କେଉଁ ରଙ୍ଗର ସ୍ୟାହିରେ ଲେଖିବେ ଓ କି ଧରଣର କଲମ ପକେଟ୍‌ରେ ଖୋଷିବେ – ଏ ସବୁଥିରେ ତାଙ୍କର ରୁଚିଶୀଳତା ଏବଂ କଳାତ୍ମକତା ମୁଁ ବହୁବାର ଲକ୍ଷ୍ୟ କରିଛି। ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡରେ 'କ୍ରିଏଟିଭ୍ କର୍ଣ୍ଣର' ଆରମ୍ଭ ହେବା ପରେ ସେ ମୋତେ କେତେଥର ଡାକିଥିବେ, ମାତ୍ର ସମୟ ଅଭାବରୁ ଯାଇପାରିନାହିଁ। ଆଜି ପୁରୁଣା ବସ୍‌ଷ୍ଟାଣ୍ଡ ଅଛି, ସେଇ ଆସର ବି ଚାଲୁଛି, ମାତ୍ର ତହିଁରେ ଆଉ ସେ ପ୍ରାଣୋଚ୍ଛଳତା ନାହିଁ। ଆଗକୁ ହୋଲି। ଦୁଇବର୍ଷ ତଳେ ତାଙ୍କ ସହ ଏଇଠି ଆମେ ରଙ୍ଗ ଖେଳିଥିଲୁ। ତାଙ୍କର ବିୟୋଗ ସବୁ ରଙ୍ଗ ଛଡ଼େଇ ନେଇଛି, ଆଉ ଭୁବନେଶ୍ୱରର ହୋଲି ପୂର୍ବ ହୋଲି ପରି ଲାଗିବ ନାହିଁ।

ନାଟକ ପ୍ରତି ତାଙ୍କର ଥିଲା ଚରମ ଦୁର୍ବଳତା। ସେଥିପାଇଁ ସତେ କି ନାଟକୀୟ ଭାବରେ ସେ ଆମ ଗହଣରୁ ବିଦାୟ ନେଇଗଲେ। ଏଇ ଗଲା ଡିସେମ୍ବର ୨୯ ତାରିଖରେ ଓଡ଼ିଆ କଥା ସାମ୍ରାଜ୍ୟର ଅନ୍ୟତମ ନାୟକ ଜଗଦୀଶ ମହାନ୍ତି ଯେପରି ଆକସ୍ମିକ ଭାବେ ରେଳ ଦୁର୍ଘଟଣାରେ ବିଦାୟ ନେଇଗଲେ, ସେମିତି ସୁରେଶ ବାବୁ ମଧ୍ୟ ଚାଲିଗଲେ। ଏକଦା ଗୋଦାବରୀଶ ମହାପାତ୍ର ତାଙ୍କର ପ୍ରିୟ ଶିକ୍ଷକ ଓ କବି ଗୋଦାବରୀଶ ମିଶ୍ରଙ୍କ ମହାପ୍ରୟାଣରେ ଯେଉଁ ଅଶ୍ରୁସିକ୍ତ ଧାଡ଼ି କେତୋଟି ଲେଖିଥିଲେ ତହିଁରୁ କେତୋଟି ଧାଡ଼ି ଉଦ୍ଧାର କରି ମୁଁ ବନ୍ଧୁ ସୁରେଶଙ୍କୁ ଶ୍ରଦ୍ଧାଞ୍ଜଳି ଜଣାଉଛି:

ତୁମେ ତ ଦେଖିଲ ନାହିଁ କିଏ ଦେଲା ଗଳେ ଫୁଲମାଳ
ତୁମେ ତ ଦେଖିଲ ନାହିଁ କିଏ ତୁମ ପଛେ ପଛେ ଗଲା।
ଚରଣ ପରଶି କିଏ ମଥା ନୋଇଁ ଦେଲା ଅଶ୍ରୁ ଢାଳି
କେ କରିଲା ସଂକୀର୍ତ୍ତନ ତୁମ ନାମେ ଦେଇ କରତାଳି। ■

**'ଅନୁଭବ', ୩୭୮ ବରମୁଣ୍ଡା ଗାଁ, ଭୁବନେଶ୍ୱର- ୭୫୧୦୦୩**



# ନିଶିପଦ୍ମ ସୁରେଶ

## ଅସିତ ମହାନ୍ତି

ଯିବେ ଯଦି ଆସନ୍ତୁ; ମୁଁ ଆପଣଙ୍କୁ ଘରେ ଛାଡ଼ିଦେଇ ଯିବି !" ସେଦିନ ଏହା କହିବା ବେଳେ ସୁରେଶ ମନେହେଉଥିଲେ ଅଧିକ ଅସ୍ଥିର ।

ଭୁବନେଶ୍ୱରର ପୁରୁଣା ବସ୍‌ଷ୍ଟାଣ୍ଡରେ ସଂଧ୍ୟା ତଥାପି ବିତିଯାଇ ନଥିଲା । ମୁଁ କହିଲି, "ଆଜି କାଇଁକି ଏତେ ତରବର ? ଆଉ ଟିକିଏ ଯାଉ !"

"ଆଜି ଆମ ଘରେ ବ୍ରହ୍ମକମଳ ଫୁଟିବ !" ସେ ଉଚ୍ଛ୍ୱସିତ ସ୍ୱରରେ କହିଲେ । କଣ୍ଠରେ ତାଙ୍କର ଥିଲା ଅନେକ ଆବେଗ । ତା' ପରେ ପଚାରିଲେ, "ବ୍ରହ୍ମକମଳ ଜାଣିଚନ୍ତି ତ ?"

ମୁଁ କହିଲି, "ହଁ । ମୁଁ ପରା 'ପୌରୁଷ'ରେ ତା' ଉପରେ ଗୋଟିଏ କଭର ଷ୍ଟୋରି କରିଚି !"

"ସତରେ ! ମତେ ସେଇଟା ଟିକିଏ ଖୋଜି ଦେବେ ! ଅଫିସ୍‌କୁ ନେଇ ଆସିଥିବେ; ମୁଁ କାଲି ଯାଇ ଆପଣଙ୍କଠୁଁ ନେଇ ଆସିବି !"

ମତେ ଆଉ ଅପେକ୍ଷା ନକରି ସେଦିନ ସେ ଚାଲିଗଲେ ଝଡ଼ପରି । ରାତିରେ ଘରକୁ ଫେରି ପୁରୁଣା 'ପୌରୁଷ' ଭିତରୁ ସେଇ ସଂଖ୍ୟାଟିକୁ ଖୋଜି ପରଦିନ ନେଇ ଆସିଥିଲି ଅଫିସ୍‌କୁ । ୨୦୦୮ ମାର୍ଚ୍ଚ ମାସ ସଂଖ୍ୟା । ତା'ର 'ପ୍ରଚ୍ଛଦ ପ୍ରସଙ୍ଗ' ଥିଲା- 'ବ୍ରହ୍ମକମଳ: ପବିତ୍ର ନିଶିପଦ୍ମ' ।"

ପରେ ଆଉ ଯେତେଥର ଦେଖା ହେଇଚି- ପଚାରିଚି, "କାଇଁ ଲେଖାଟିକୁ ତ ଆସି ନେଲେନି ?" ସେ କହିଛନ୍ତି, "ଅଛି ତ ଆପଣଙ୍କ ପାଖେ- ମୁଁ ଯାଇ ନେଇ ଆସିବିନି କି !"

କିନ୍ତୁ ସେ ଲେଖାଟି ସେମିତି ଥୁଆ ହେଇଚି ମୋ' ପାଖେ । କେବେ ଦିନେ ଆସି ନେବାକୁ ସେ ଆଉ ନାହାନ୍ତି !

ମୁଁ ଆଜିକାଲିକାର 'ଫେସ୍‌ବୁକ୍'ର ମେଳ ଭିତରେ ନାହିଁ । କିନ୍ତୁ ସୁରେଶଙ୍କ ଆକସ୍ମିକ ବିୟୋଗ ପରେ, ଆଜି ଦେଖୁଚି, ତାଙ୍କ 'ଫେସ୍‌ବୁକ୍'ୱାଲ୍‌ରେ ଫୁଟି ହସୁଛନ୍ତି ଅନେକଗୁଡ଼ିଏ ବ୍ରହ୍ମକମଳ । ତାରିଖ ଦିଆହୋଇଚି- ୧୭ ଅଗଷ୍ଟ ୨୦୧୩, ରାତି ଗୋଟାଏ ଅଠର । ସେଦିନ ସାରାରାତି ଅନିଦ୍ରା ରହି ସେ ବ୍ରହ୍ମକମଳ ଧୀରେଧୀରେ ପାଖୁଡ଼ା ମେଲିବା ଆଉ ଆସ୍ତେ ଆସ୍ତେ ପାଖୁଡ଼ା ମୁଦିବାର ଦୃଶ୍ୟ ଆନନ୍ଦ ମନରେ ଦେଖିଥିଲେ ଆଉ ତା'ର ଫଟୋ ବି ନେଇଥିଲେ । ଅଥଚ ମାତ୍ର ପାଞ୍ଚଟି ମାସ ଯାଇଚି, ଜାନୁଆରି ତେର ତାରିଖ ରାତିରେ ସେ ଆଖି ମୁଦିଦେଲେ ସବୁଦିନ ପାଇଁ । ତାଙ୍କର ପ୍ରିୟଜନମାନେ ସେଦିନ ରାତିରେ ସୁରେଶଙ୍କର ମରଶରୀର ପଞ୍ଚଭୂତରେ ମିଶିଯାଉଥିବାର ଦୃଶ୍ୟ ଦେଖିଲେ- ଲୁହଭିଜା, ଭାରି ହୃଦୟରେ !

କବି, ଗାଳ୍ପିକ, ନାଟ୍ୟକର୍ମୀ ଓ ନାଟ୍ୟକାର, ଫିଚରଲେଖକ, ଅନୁବାଦକ, ଲୋକକଳା ଓ ଲୋକନାଟ୍ୟର ଗବେଷକ, ଚିତ୍ରକର- ଏମିତି ସୃଜନନଦୀ ସୁରେଶଙ୍କର ବିବିଧ ଧାରାରେ ପ୍ରବାହିତ ହୋଇଯାଇଛି । ସେସବୁକୁ ନେଇ ସେ ଗଢ଼ିଥିଲେ ନିଜର ଏକ ସ୍ୱତନ୍ତ୍ର ସାମ୍ରାଜ୍ୟ । ସେଇଥିପାଇଁ ବୋଧହୁଏ କବିତା ଲେଖାରୁ ଆରମ୍ଭ ହୋଇଥିବା ତାଙ୍କ ସର୍ଜନାର ଆଦି କାବ୍ୟକୃତିଟିର ନାଆଁ ଥିଲା 'ନିଜସ୍ୱ ସାମ୍ରାଜ୍ୟ' । କିନ୍ତୁ ପରେ ସେଇ ସୃଷ୍ଟିଶୀଳତା ଅନ୍ୟ ସର୍ଜନକ୍ଷେତ୍ରରେ ସ୍ୱାତନ୍ତ୍ର୍ୟ ପ୍ରଦର୍ଶନ କରିଥିଲେ ହେଁ କବିତାର ପ୍ରବାହ ଥିଲା ଫଲ୍‌ଗୁ ପରି ଅନ୍ତଃସ୍ରୋତା । 'କହ୍ନେଇକୁ ଖୋଜିଖୋଜି' ଥିଲା ତାଙ୍କର ଏକ ଗଳ୍ପଗ୍ରନ୍ଥର ନାଆଁ । ଅବସର ପରର ଜୀବନକୁ ନେଇ ଅନେକ ଯୋଜନା ଥିଲେ ବି, ଅନେକ କାମ ଅଧା ରହିଥିଲେ ବି ସେ ଯେମିତି କହ୍ନେଇ (ଲାଲ ଦାସ)ଙ୍କୁ ଖୋଜି ଖୋଜି ଚାଲିଗଲେ- ସେଇ ପଥରେ, ଯେଉଁ ପଥରେ ମାତ୍ର ପନ୍ଦର ଦିନ ଆଗରୁ ଚାଲିଯାଇଥିଲେ ଜଗଦୀଶ ମହାନ୍ତି ।

ମୁଁ କିନ୍ତୁ ସୁରେଶ ବଳବନ୍ତ ରାୟଙ୍କୁ ଅଧିକ ଗୁରୁତ୍ୱ ଦେଉଥିଲି ତାଙ୍କର ଭିନ୍ନ ମାନସିକତା ଓ କୃତିପାଇଁ । ରାଜା ରାମକୃଷ୍ଣ ଛୋଟରାୟଙ୍କ 'ପ୍ରହ୍ଲାଦ ନାଟକ'ର ସଂପାଦନା ସେ କରିଥିଲେ । ଭାରତ ସରକାରଙ୍କଠୁଁ ଫେଲୋସିପ୍ ଆଣି କର୍ଣ୍ଣାଟକର 'ଯକ୍ଷଗାନ' ଓ ଓଡ଼ିଶାର 'ପ୍ରହ୍ଲାଦ ନାଟକ' ଉପରେ ତୁଳନାତ୍ମକ ଅଧ୍ୟୟନ କରିଥିଲେ । 'ଇନ୍‌ଟାକ୍'ର ଓଡ଼ିଶା ଚାପ୍ଟର ସହଯୋଗରେ, ଏକ ପ୍ରକଳ୍ପରେ ସେ ଭୁବନେଶ୍ୱର ଉପକଣ୍ଠର 'ହୀରାପୁର ଚଉଷଠୀ ଯୋଗିନୀ'କୁ ନେଇ ଏକ ପଞ୍ଜୀକରଣ କାମ କରିଥିଲେ ଏବଂ ପରେପରେ ତାହାକୁ ନେଇ ଇଂରାଜୀରେ ଏକ ପୁସ୍ତିକା ବି ପ୍ରକାଶ କରିଥିଲେ । ଏସବୁକୁ ଆଧାରକରି ଆମର ପରିଚୟ କ୍ରମେ ନିବିଡ଼ ହୋଇଥିଲା । ସେହି ପୁସ୍ତକରେ ସେ ଯୋଗିନୀତନ୍ତ୍ରର ଗବେଷିକା ବିଦ୍ୟା ଦେହେଜିଆଙ୍କର ଉଲ୍ଲେଖ କରିଥିଲେ । ଦିନେ ସୁରେଶଙ୍କ ସହିତ ସେ ସଂପର୍କରେ ଆଲୋଚନା ବେଳେ ମୁଁ କହିଥିଲି, 'ଯୋଗିନୀ' ପ୍ରସଙ୍ଗରେ ଆଉ ଗୋଟିଏ ଭଲ ବହି ଲେଖିଛନ୍ତି ସମ୍ୱବୀ ଲରେନ୍ ଚୋପ୍ରା । ସେ ବହି ସହିତ ଗୁହ୍ୟଯୋଗକୁ ନେଇ ଆଉ ଗୋଟିଏ ଭଲ ବହି ବି ଅଛି ନରେନ୍ଦ୍ର ନାରାୟଣ ଦାଶଙ୍କ ସଂଗ୍ରହରେ । ତାହାକୁ ନେଇ ଏବଂ ହୀରାପୁର ସହିତ ବଲାଙ୍ଗିର ଜିଲ୍ଲାର ରାଣୀପୁର ଝରିଆଲର ଯୋଗିନୀ ପୀଠକୁ ମିଶାଇ, ଓଡ଼ିଶାର ତନ୍ତ୍ର-ସଂସ୍କୃତି ଓ ଯୋଗିନୀ-ତନ୍ତ୍ର ସଂପର୍କରେ ଗୋଟିଏ ବଡ଼ ବହି ସେ ପ୍ରସ୍ତୁତ କରନ୍ତୁ । ସେହି ପ୍ରସ୍ତାବକୁ ସେ ଆଗ୍ରହରେ ସ୍ୱୀକାର ମଧ୍ୟ କରିଥିଲେ । କିନ୍ତୁ ଓଡ଼ିଆରେ ଗୋଟିଏ ଅପେକ୍ଷାକୃତ ବଡ଼ବହି ପ୍ରସ୍ତୁତ କରିଥିଲେ ମଧ୍ୟ ସେହି ବୃହତ୍ ଯୋଜନାଟି ଶେଷସୁଦ୍ଧା ଯୋଜନାରେ ହିଁ ରହିଗଲା । ଅକ୍ଷୟ ମହାନ୍ତିଙ୍କ ଏକ ଗୀତର ପବନ ପରି ସେ ଥିଲେ 'ବଡ଼ ଛଟପଟ' । କୌଣସି ଗୋଟିଏ ଜାଗାରେ ତମାମ ଜୀବନ ବାନ୍ଧି ହୋଇ ରହିବା ତାଙ୍କ ଜାତକରେ ନଥିଲା ।

ପରେ ପରେ ସହରପ୍ରାନ୍ତ ହୀରାପୁରରୁ ସେ ଫେରିଆସିଥିଲେ 'ସେଇ ସମୟ ଏଇ ସହର' ଭୁବନେଶ୍ୱରକୁ । କିନ୍ତୁ ହୀରାପୁରକୁ ସେ ଛାଡ଼ି ନଥିଲେ କି ହୀରାପୁର ତାଙ୍କୁ ଛାଡ଼ି ନଥିଲା । କିନ୍ତୁ ଏଇ ସହର ଓ ଏଇ ସମୟ ଭିତରେ ଘୂରି ବୁଲୁଥିଲେ ବି ସେ ନିଜକୁ ହଜାଇ ଦେଇଥିଲେ 'ସେଇ ସମୟ'ର ଭୁବନେଶ୍ୱର ଭିତରେ । ପ୍ରକାଶ କରିଥିଲେ ଦୁଇଶହ ପୃଷ୍ଠାର ପାଠ ଓ ପ୍ରାୟ ଶହେଟି ଫଟୋପ୍ଲେଟ୍ ସମ୍ୱଳିତ ଏକ ସୁଦୃଶ୍ୟ ପୁସ୍ତକ- 'ସେଇ ସମୟ ଏଇ ସହର ଭୁବନେଶ୍ୱର' । ଏକ ଉଦୁଉଦିଆ ଦି'ପହରରେ ବହିଟିକୁ ନିଜେ ଆସି ମତେ ଦେଇଯାଇଥିଲେ । ଏ ଭିତରେ ଆହୁରି କେତୋଟି ଉଲ୍ଲେଖନୀୟ କାମ ବି ସେ କରିଥିଲେ । ସେଥିମଧ୍ୟରୁ ଦୁଇଟି ହେଉଛି, କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ଢେଙ୍କାନାଳ ଜିଲ୍ଲା ଲେଖକ ସଂସଦର ମିଳିତ ଆନୁକୂଲ୍ୟରେ ଆୟୋଜିତ ଆଲୋଚନାଚକ୍ରର ନିବନ୍ଧାବଳୀକୁ ନେଇ ସଂକଳିତ ଓ ସଂପାଦିତ ଏକ ପୁସ୍ତକ 'ଓଡ଼ିଆ ସମର ସାହିତ୍ୟ' ଏବଂ ବାଂଲାଦେଶର ପ୍ରସିଦ୍ଧ ଔପନ୍ୟାସିକ ଅନିସୁଲ୍ ହକ୍‌ଙ୍କ ସୁପ୍ରସିଦ୍ଧ ଉପନ୍ୟାସ 'ମା'ର ଓଡ଼ିଆ ଅନୁବାଦ ।

ପ୍ରାଚୀନ ସାହିତ୍ୟ, ବିଶେଷକରି ଓଡ଼ିଆ ତତ୍ତ୍ୱସାହିତ୍ୟ ସହିତ ଗଭୀର ଆତ୍ମିକ ସଂପର୍କ ଥିଲା ସୁରେଶଙ୍କର । ବିଶେଷକରି ସାରଳା ପରବର୍ତ୍ତୀ ପଞ୍ଚସଖା-ସାଧକମାନଙ୍କର ଶୂନ୍ୟବାଦ, ଯୋଗ ସାଧନା ଓ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱଦ୍ୱାରା ସେ ଗଭୀର ଭାବେ ପ୍ରଭାବିତ, ଅନୁପ୍ରେରିତ ହୋଇଥିଲେ । ତାଙ୍କ ଗଳ୍ପଗ୍ରନ୍ଥର ନାମକରଣ 'ସୁଜନେ ହୋ ବାଲିରେଣୁ ମହାବନ୍ଧ'ଠାରୁ ଆରମ୍ଭ କରି ଅଳ୍ପ କିଛି ମାସ ତଳର 'ତତ୍ତ୍ୱ ପେଣ୍ଟିଂସ୍' ଗୁଡ଼ିକରେ ସେଇ ପ୍ରଭାବର ଲିପି ଓ ରଙ୍ଗ ରୂପାୟିତ ।

ଜାଣିଥିଲି, କଣ୍ଢେଇମାନଙ୍କୁ ନେଇ ତାଙ୍କର ଲୀଳାଖେଳା ବି ଦୀର୍ଘକାଳର । ଦେଶ ବିଦେଶର ନାନା ଜାତିର କଣ୍ଢେଇ ସେ ସଂଗ୍ରହ କରିରଖିଛନ୍ତି ଏବଂ ନିଜ ଘରେ ଏକ କଣ୍ଢେଇ ସଂଗ୍ରହାଳୟ ମଧ୍ୟ ପ୍ରତିଷ୍ଠା କରିଛନ୍ତି । ତେଣୁ ମଝିରେ ଦିନେ ଦେଖାହେବା ବେଳେ ତାଙ୍କୁ କହିଥିଲି, "କଣ୍ଢେଇଙ୍କୁ ନେଇ ଏକ ପ୍ରଚ୍ଛଦ ପ୍ରସଙ୍ଗ 'ପୌରୁଷ' ପାଇଁ ପ୍ରସ୍ତୁତ କରିଦିଅନ୍ତେ ନାଇଁ !" ସେ ସାଙ୍ଗେସାଙ୍ଗେ ରାଜି ହୋଇଯାଇଥିଲେ । ଆଗ୍ରହରେ କହିଥିଲେ, "ହଁ, ହଁ, ନିଶ୍ଚେ କରିବି !" କିନ୍ତୁ ଦିନ, ମାସ ଗଡ଼ି ଚାଲିଲା । ମଝିରେ ତାଙ୍କୁ କହିଲି, "ଆପଣ ତ କଲେନି, ମୁଁ ଗୌରାଙ୍ଗ ଭାଇ (ଗୌରାଙ୍ଗ ଚରଣ ଦାଶ)ଙ୍କୁ କହିଦେଇଚି, ସେ କରିବେ ।" ସେ କହିଲେ, "କାଇଁକି, ମୁଁ କରିବି । ଏଇ ସପ୍ତାହରେ ଦେଇଦେଉଚି !"

କିନ୍ତୁ ଶେଷଯାଏ ସେ ସପ୍ତାହଟି ଆଉ ଆସିଲା ନାଇଁ । ଆଉ କେବେ ବି ଆସିବ ନାଇଁ !

ଆଜି, ତାଙ୍କପାଇଁ ଏ ଶୋକଲେଖ ଲେଖିଲାବେଳେ ମୋର ମନେହେଉଚି, ସେ ତାଙ୍କ 'ଚଉଷଠୀ ଯୋଗିନୀ'ର ବର୍ଣ୍ଣନା ପରି- ଏମିତି ଗୋଟିଏ ମନ୍ଦିର, ଯାହାର ଗର୍ଭଗୃହ ନାହିଁ କି ଛାତ ନାହିଁ । ସେ ପୀଠ ମଧ୍ୟକୁ ସୂର୍ଯ୍ୟାଲୋକ ସିଧାସଳଖ ପ୍ରବେଶ କରେ !

ତାଙ୍କ ଅଗଣାର ନିଶିପଦ୍ମ ପରି ସେ ନୂଆସକାଳ ଆଗରୁ ମୁଦି ହୋଇଯାଇଥିଲେ ବି, ମୋର ମନେହୁଏ ସୁରେଶ ବଳବନ୍ତରାୟ ବୋଧହୁଏ ଆମ ସମୟର ଶେଷ ଖୋଲାମଣିଷ, ଶେଷ ଖୋଲାମନ୍ଦିର ! ତାଙ୍କ ଭିତରର ମୂର୍ତ୍ତିଗୁଡ଼ିକୁ ଆଲୋକ, ପବନ, ବରଷା, ଶୀତ ସବୁଦିନେ ସିଧା ଛୁଏଁ !

ଆମ ଭିତରେ ସେ ସବୁଦିନେ ସେମିତି ଖୋଲାମେଲା ମନ୍ଦିରଟିଏ ହୋଇ ଜିଇଥାଆନ୍ତୁ !



# ବିଶ୍ୱାସ ହେଉନାହିଁ ସେ ନାହାନ୍ତି ବୋଲି

## ପ୍ରଶାନ୍ତ ଚନ୍ଦ୍ର ପଟ୍ଟନାୟକ (ପ୍ରୀତମ)

ମୋ ନିବାସରେ ଯେଉଁ କେତେଜଣ ବନ୍ଧୁ ସାନ୍ଧ୍ୟ ଭ୍ରମଣରେ ଆସି ଆସର ଜମାନ୍ତି, ସେତେବେଳେ ସୁରେଶ ବଳବନ୍ତରାୟ ଆସି ପଚାରନ୍ତି 'ମହାକବି ଆସିଛନ୍ତି କି ?' କବି ସୌରୀନ୍ଦ୍ରବାବୁଙ୍କୁ ସେ ବହୁତ ଭଲ ପାଆନ୍ତି । ସ୍ନେହରେ ତାଙ୍କୁ ମହାକବି ବୋଲି ଡାକନ୍ତି । ସୌରୀନ୍ଦ୍ର ଆସି ବସିଥିବେ, କିନ୍ତୁ ସୁରେଶବାବୁ ତାଙ୍କୁ 'ମହାକବି' ବୋଲି ଡାକି ଆସର ଜମେଇ ଦିଅନ୍ତି ।

ଚିତ୍ରଶିଳ୍ପୀ ଡ.ଦିନନାଥ ପାଠୀ, କବି ସୌରୀନ୍ଦ୍ର ବାରିକ, ଅର୍ଥନୀତିଜ୍ଞ ଡ.ବାସୁଦେବ ସାହୁ, ସାହିତ୍ୟିକ ଡ.ବିଜୟ କୁମାର ମହାନ୍ତି, ଫଟୋ ଚିତ୍ରଶିଳ୍ପୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଧୀର ଓ ଇଂରାଜୀ ସାହିତ୍ୟ ପ୍ରଫେସର ଗୌରହରି ପ୍ରଧାନଙ୍କ ଗହଣରେ ସାନ୍ଧ୍ୟା ଆସର ବସୁଥାଏ । ସୁରେଶ ବାବୁଙ୍କୁ ସମସ୍ତଙ୍କ ଅପେକ୍ଷା । ସେ ଆସିଲେ ସମସ୍ତଙ୍କ ମନକୁ ହାଲୁକା କରିବାପାଇଁ ଅନେକ କଥା ପରିହାସ ଛଳରେ କହନ୍ତି । ରୀତିଯୁଗରୁ ଆରମ୍ଭ କରି ଆଧୁନିକ କବିମାନଙ୍କ କବିତାକୁ ସେ ତାଙ୍କ ଉଦାର କଣ୍ଠରେ ଆବୃତ୍ତି କରି ଶୁଣାନ୍ତି । କାବ୍ୟ ଓ କବିତା ଆବୃତ୍ତି କରିବାର କଳାରେ ସେ ସୁଦକ୍ଷ ଥିଲେ । ତାଙ୍କର ଅନେକ କାବ୍ୟ କବିତା କଣ୍ଠସ୍ଥ ଥାଏ । ସେ ଅନର୍ଗଳ ଆବୃତ୍ତି କରିଚାଲନ୍ତି ।

କେବଳ ସାହିତ୍ୟ ନୁହଁ, ଚିତ୍ରକଳା, ନାଟକ, ପ୍ରବନ୍ଧ ଓ ଗବେଷଣା ସହିତ ଚଉଷଠୀ ଯୋଗିନୀ ଐତିହ୍ୟର ସୁରକ୍ଷା ପାଇଁ ନିଷ୍ଠା ସହିତ ସେ ଉଦ୍ୟମଶୀଳ ଥିଲେ । ଜଣେ କବି ଭାବରେ ତାଙ୍କର ସୃଜନମୁଖୀ ପ୍ରତିଭା ମଧ୍ୟ ପ୍ରକାଶ ପାଇଥିଲା । 'ଯୋଗିନୀ' କବିତା ତାଙ୍କ ଆଧ୍ୟାତ୍ମିକତାର ଅନ୍ତଃସ୍ୱର ବହନ କରୁଥିଲା । ଆମ ସାନ୍ଧ୍ୟ ଆସରରେ ତାଙ୍କ ଯୋଗିନୀ କବିତା ଆବୃତ୍ତି କରି ଶୁଣାଇଥିଲେ । ଜଣେ ବନ୍ଧୁବତ୍ସଳ ବ୍ୟକ୍ତି ଭାବରେ ସେ ଆମ ଆସରର ବନ୍ଧୁମାନଙ୍କୁ ନେଇ ବନାରସ ଯାଇଥିଲେ । ଆଗକୁ କାଠମାଣ୍ଡୁ ଯିବାର ପରିକଳ୍ପନା ଥିଲା, କିନ୍ତୁ ସେ କଳ୍ପନା କାର୍ଯ୍ୟକାରୀ କରିବାକୁ ରହିଲେ ନାହିଁ । ପୁରୁଣା ବସ୍‌ଷ୍ଟାଣ୍ଡରେ ସେ ସାହିତ୍ୟିକ ବନ୍ଧୁମାନଙ୍କ ଆସରର ପ୍ରାଣ ପ୍ରତିଷ୍ଠାତା ଓ ସକ୍ରିୟ ସଙ୍ଗଠକ ଥିଲେ । କଣ୍ଢେଇ ସଂଗ୍ରହ ତାଙ୍କ ବ୍ୟକ୍ତିତ୍ୱର ଅନ୍ୟତମ ଆଗ୍ରହ ଓ ଆବେଗ ଥିଲା ।

ଜଣେ ବହୁମୁଖୀ ପ୍ରତିଭାର ଉନ୍ମୁଖ ବ୍ୟକ୍ତି ଭାବରେ ସେ ତାଙ୍କ ଜୀବନରେ ବହୁତ କିଛି କୃତି ଓ କୃତିତ୍ୱର ପରାକାଷ୍ଠାରେ ଏକ ଉଜ୍ଜ୍ୱଳ ଭବିଷ୍ୟତର ସମ୍ଭାବନା ବହନ କରୁଥିଲେ । ଆମ୍ଭେମାନେ ବୟସରେ ତାଙ୍କଠାରୁ ବଡ଼ ଥିଲେ ବି ସେ ଆମ ସହିତ ଜଣେ ଅତି ଅନ୍ତରଙ୍ଗ ମେଳାପୀ ସମବୟସୀ ବନ୍ଧୁ ଭାବରେ ମିଶିଯାଉଥିଲେ ।

ତେଣୁ ଆଜି ବିଶ୍ୱାସ ହେଉନାହିଁ ସେ ଆମକୁ ଛାଡ଼ି ଚାଲିଯାଇଛନ୍ତି ବୋଲି ।

ଏମ୍-୪୪, ଭୀମଟାଙ୍ଗୀ, ଭୁବନେଶ୍ୱର-୨
ମୋ: ୯୮୫୩୩୩୫୯୬୨



# ଆପଣଙ୍କ ଚିଠି ଅପେକ୍ଷାରେ

## ନେତାଜୀ ଅଭିନନ୍ଦନ

ପ୍ରିୟ ସୁରେଶ ଭାଇ,

ପ୍ରଣାମ,

ତୂଳୀରୁ ରଂଗ ଶୁଖିନି। କାନ୍‌ଭାସ୍‌ରେ ଅଂକାହଉଥିବା ଚିତ୍ର ଅଧା। ନାଟକର ସଂଳାପ ବି ଅଧା। କେତେ କେତେ ଅନୁବାଦର କାମ ସରିନି। କଣ୍ଢେଇମାନଙ୍କୁ ସଜଡ଼ା ହୋଇ ରଖା ହୋଇନି। ଆପଣଙ୍କ ସ୍ୱପ୍ନମାନେ ଅନାଥ ଭଳି ବୁଲୁଛନ୍ତି ପରସ୍ପରର ହାତ ଧରାଧରି ହୋଇ। ବସ୍‌ଷ୍ଟାଣ୍ଡର ଚଟାଣ ଉପରୁ ଆପଣଙ୍କ ଗୁଟ୍‌ଆ ଛେପର ଦାଗ ବିତ ଶୁଖିନି ଏଯାଏଁ। ଆପଣଙ୍କ ମନଖୋଲା ହସର କଣିକା ମାନେ ବି ବସ୍‌ଷ୍ଟାଣ୍ଡର ଇଥର ମଣ୍ଡଳରେ ଘୁରି ବୁଲୁଛନ୍ତି ଏଯାଏଁ, ସତେ ଯେମିତି ଏଇମାତ୍ର ହସିଛନ୍ତି ଆପଣ !

ଅଥଚ ଆପଣ ଚାଲିଗଲେ। ସତେ ଯେମିତି କିଛିବି ହେଇନି; ଆପଣଙ୍କର ଚାଲିଯିବାର ହିଁ ଥିଲା। ଠୋ ଠୋ ହସରେ ଜୀବନକୁ ପ୍ରାଣବନ୍ତ କରୁଥିବା ଆପଣ ଯେ ଏତେ ଶୀଘ୍ର ମୃତ୍ୟୁର ପ୍ରଶାନ୍ତିକୁ ଆଦରିନେବେ, ଆମେ ଭାବିନଥିଲୁ। ଅସୀମ ଦା (ବସୁ)ଙ୍କ ଭାଷାରେ "ଠକି ଦେଲେ ଆପଣ"।

ମନେପଡୁଛି, ୨୦୦୮ ମସିହାରେ ଯେତେବେଳେ 'ଚିଠି' (ପତ୍ରିକା) ର ନବନ୍ୟାସ ପାଇଁ ମୁଁ ଅଣ୍ଟା ଭିଡ଼ିଲି, ଆପଣ ଆସି ପହଞ୍ଚିଥିଲେ ଘରେ। କହିଲେ, ପାରମ୍ପରିକ ଢ଼ଙ୍ଗରେ 'ଚିଠି' ଉନ୍ମୋଚିତ ହେବନାହିଁ। ନୂଆ 'ଚିଠି' ବାହାରିବ ଗୋଟେ ଚିଠିବାକ୍ସରୁ। ସେ ବାକ୍ସ ମୁଁ ତିଆରି କରିଆଣିଦେବି।" ସତକୁ ସତ ଆପଣଙ୍କ ହାତତିଆରି ଚିଠିପେଡ଼ିରୁ ହିଁ 'ଚିଠି' ବାହାରିଲା ନୂଆ ରୂପ ଓ ରଂଗରେ । 'ଚିଠି' ବାହାରି ଚାଲିଲା। ପାଠକମାନଙ୍କ ଶ୍ରଦ୍ଧା ଓ ଭଲପାଇବା ସାଉଁଟିଲା ଅଥଚ 'ଚିଠି' ପାଇଁ ଆପଣଙ୍କ ଚିଠି ଖଣ୍ଡେ ପାଇଲିନାହିଁ। ଅଭିମାନ କରେ। ପ୍ରତିଥର କହନ୍ତି, ଆରଥରକୁ ନିଶ୍ଚୟ ଦେବି। ନିଜେ ନେଇ ଘରେ ଦେଇଆସିବି।" ମୁଁ ଅପେକ୍ଷା କରେ। ଚିଠି ଆସେନାହିଁ।

ଏଇଥର ସେପ୍ଟେମ୍ବର ମାସରେ ଚିତ୍ରଶିଳ୍ପୀ ଲେଖାଶ୍ରୀ ସାମନ୍ତସିଂହାରଙ୍କ ଘରେ ଆପଣଙ୍କୁ ଭେଟିଲି ଏକ ଆସରରେ। ଅସୀମ୍ ଦା, ଦୀନନାଥ ପାଠୀ, ରାମହରି ଜେନା ପ୍ରମୁଖ ଥାଆନ୍ତି। ପିଆଲା ଭରପୁର ଥାଏ। କଥା ବେଶ୍ ଜମିଥାଏ ଓଡ଼ିଶାର କଳା, ସାହିତ୍ୟ ଓ ସଂସ୍କୃତିକୁ ନେଇ। ଆପଣ ହସୁଥାନ୍ତି। ଆଉ ଗପୁଥାନ୍ତି। ■





# ସୁରେଶ ଭାଇ

ରକ୍ଷକ ନାୟକ

ଅନ୍ଧାରରୁ ବାହାରି ଆସିଲ;
ମୋ ସମେତ ସଭିଏଁ ରାସ୍ତା, ଗଛ, ପକ୍ଷୀ, ଲୋକବାକ
ଆଶ୍ଚର୍ଯ୍ୟରେ ସ୍ତବ୍ଧ ହେଇଗଲେ
ମୋ କାନରେ ଫୁସ୍ ଫୁସ୍ କରି କହିଗଲ
ପୁଣି ଅନ୍ଧାରରେ ମିଶିଗଲ ।

ଥରେ ନୁହେଁ, ଏମିତି ଅନେକ ବାର
ପ୍ରାୟ ପ୍ରତିଟି ସାକ୍ଷାତରେ; ତୁମେ ବୋଇତଟିଏ
ଭସାଇ ଦିଅ ମୋ ରକ୍ତ ପ୍ରବାହରେ
ଆଖିରେ ସ୍ୱପ୍ନରେ ଅଙ୍କୁରାରୋପଣ କରି
ମୋ ପିଲାବେଳର କଣ୍ଢେଇମାନଙ୍କୁ ଜୀବନ୍ୟାସ ଦେଇ
ତୁମେ ଛଳିଯାଅ
ପରବର୍ତ୍ତୀ ସାକ୍ଷାତର ତିଥି ବାର ଦେଇ ।

ଅବଶ୍ୟ କଥା ଦେଇ
କଥା ନରଖିବା, ହେଳା କରିବା
ତୁମର ପୁରୁଣା ଖୋଇ ।

ମୁଁ ଜାଣିଛି କେତେ କେତେ ପରିତ୍ୟକ୍ତ ମୂର୍ତ୍ତିମାନଙ୍କୁ
ଆଶା ଦେଇଥିଲ ସିନ୍ଦୁର ପିନ୍ଧାଇବ ବୋଲି
କେତେ ଅଲୋଡ଼ା ଗଛକୁ କଥା ଦେଇଥିଲ
ତା'ର ଔଷଧୀୟ ଗୁଣ ବଖାଣିବ ବୋଲି
କେତେ ରାସ୍ତାକୁ ନାଁ ଦେବ ବୋଲି
ସେମାନେ ପଡ଼ି ରହିଛନ୍ତି, ତୁମ ଅପେକ୍ଷାରେ
ହଜିଯାଉଥିବା ଶବ୍ଦାବଳୀ, ଉଚ୍ଚାଟନରେ
ଉଚ୍ଚାରିତ ହେବାକୁ ତୁମ ଓଠରେ ।

ମୁଁ ଜାଣିଛି, ତୁମେ ଆଉ ଅନ୍ଧାରରୁ ଆସି
ଅନ୍ଧାରରେ ମିଶିଯିବନି
ତୁମର ସ୍ଥାୟୀ ଅବର୍ତ୍ତମାନ ବ୍ୟାପ୍ତ ହେଲାଣି;
ତୁମ କଥା ଲେଖିବାକୁ ହେବ;
ହେଲେ ଲେଖା ମୋଟେ ସରୁନି;
ଖବର ମିଳିଲା;
ସ୍ମରଣିକା ଛପା ସରିଲାଣି । ❑





# ମିଛ

**ସୂର୍ଯ୍ୟ ଦେଓ**

ଏବେ ସବୁ ମିଛ ମିଛ ଲାଗେ ସୁରେଶ ଭାଇ ! ମିଛ ଲାଗେ ଆପଣଙ୍କ ମୃତ୍ୟୁ ସମ୍ବାଦ, ମିଛ ଲାଗେ ଆପଣଙ୍କ ଭଲ ପାଇବା, ମିଛ ଲାଗେ ଆପଣଙ୍କ ଶ୍ରଦ୍ଧା, ମିଛ ଲାଗେ ଆପଣଙ୍କ ଆତ୍ମୀୟତା ! ମିଛ ଲାଗେ ବୋଲି ଆମେ ଅଛୁ, ଆଉ ସବୁ ସତ ବୋଲି ଆପଣ ନାହାନ୍ତି ! ସବୁ ସତ ବୋଲି ଆପଣ ମାୟା କାଟି ପାରିଛନ୍ତି ଆଉ ଆମକୁ ମିଛ ବୋଲି ଆମେ ଆପଣଙ୍କ କାୟା ପାଇଁ ଘାରି ହେଉଛୁ । ଘାରି ହେବାକୁ ଆମେ ବାଧ୍ୟ । ବାଧ୍ୟ ବୋଲି ସବୁ ମିଛ ମିଛ ଲାଗୁଛି । ଲାଗୁଛି ଏବେ ବି ଆପଣ ଅଛନ୍ତି ଆମ ଚଉକତିରେ । ଫୁର୍ତ୍ତିରେ କି ବିଷାଦରେ ଆମେ ଆପଣଙ୍କ ସହ ପୁଣି ସ୍ୱପ୍ନ ବାଣ୍ଟିନେବୁ ।

ଆପଣ ସ୍ୱପ୍ନ ବାଣ୍ଟୁଥିଲେ । ବାସ୍ତବବାଦୀ ସ୍ୱପ୍ନ । ଯେତେ ସ୍ୱପ୍ନ ଆପଣ ରୋପି ଥିଲେ ଆମ ଛାତିରେ, ସ୍ୱପ୍ନକୁ ସତ କରିବାର ମାର୍ଗ ବି ଦର୍ଶାଉଥିଲେ । ଆପଣ ଜାଣିଥିଲେ କାହାପାଇଁ କେଉଁ ସ୍ୱପ୍ନ, ଆପଣ ଜାଣିଥିଲେ କାହାପାଇଁ କେତେ ଭଲପାଇବା । ଜାଣିଥଲେ ବୋଲି ତ ଆପଣଙ୍କ ଔଜଲ୍ୟ, ଆପଣଙ୍କ ଠାଣି, ଆପଣଙ୍କ ରୋକ୍‌ଠୋକ୍ କଥାବାର୍ତ୍ତା, ପ୍ରତ୍ୟୁତ୍ତରର କୌତୁକ ଆଉ ସବୁ କଥାର ବିଷୟ ପ୍ରତି ଏକ ଗଭୀର ସତେଜ ଅନ୍ତର୍ଦୃଷ୍ଟିକୁ କେବେ ଆମେ ଇର୍ଷା କରୁଥିଲୁ, କେବେ ପୁଣି ଡରୁଥିଲୁ ।

ସୁରେଶ ଭାଇ ! ଆପଣଙ୍କ ଚିତ୍ର, ଗପ, ନାଟକ, ଗୀତ ପରି ଆପଣଙ୍କ ଜୀବନ ଥିଲା ତୀକ୍ଷ୍ଣ, ଉଦ୍ୟତ ଆଉ ଉଜ୍ଜ୍ୱଳ । ବେପରୱା ଭାବରେ ଆପଣ ଖର୍ଚ୍ଚ କରୁଥିଲେ ଜୀବନ, ଖର୍ଚ୍ଚ କରୁଥିଲେ ସୃଜନ ବି । ସେଥିପାଇଁ ଆପଣ କେବେ ବି ନିଜ ଲେଖକୀୟ ଦକ୍ଷତାକୁ ନ୍ୟାୟ ଦେଇ ନାହାନ୍ତି, ଚିହ୍ନିବି ବି ନିଜ ଚିତ୍ରୀ ପଣକୁ ଚିହ୍ନି ନାହାନ୍ତି । ଦେଇ ନାହାନ୍ତି, ଚିହ୍ନି ନାହାନ୍ତି ବୋଲି ତ ଅନ୍ୟମାନଙ୍କୁ ସ୍ୱପ୍ନ ଦେଖାଇଛନ୍ତି ବେଶି । ନିଜେ ସ୍ୱପ୍ନ ଦେଖିଛନ୍ତି କମ୍ । ଏହା ଆପଣଙ୍କୁ ମିଛ, ଆମକୁ ସତ । ଆପଣ ଜୀବନର ସବୁ ଛୋଟବଡ଼ ବୈଚିତ୍ର ପାଇଁ ଉତ୍ସୁକ ଥିଲେ, ସେ ଦାମ୍ ଯେତେ ଦେବାକୁ ପଡୁପଛେ, ଅନୁଷ୍ଠାନ ଗଢ଼ିବାଠାରୁ ଅନୁଷ୍ଠାନ ଭାଙ୍ଗିବା ଯାଏ ସବୁ ବୈଚିତ୍ର ସହ ସଂପୃକ୍ତ ଥିଲେ ଆପଣ । ଆପଣ ଅନୁଷ୍ଠାନ ଗଢୁଥିଲେ, ଭାଙ୍ଗୁଥିଲେ । ଚରିତ୍ର ଗଢୁଥିଲେ, ଭାଙ୍ଗୁଥିଲେ । ସେଥିପାଇଁ ଅନେକ ମିଛ ଚରିତ୍ର ଆପଣଙ୍କ ଗପରେ ସତ ହୋଇଛନ୍ତି । ଏହା ବି ଆପଣଙ୍କୁ ମିଛ, ଆମକୁ ସତ !

ଶୁଣିଥିବା କଥା କହୁଚି । ବାଲେଶ୍ୱରର ଏକ ସଭାରେ ଆପଣଙ୍କ ଗପର ସତ ଚରିତ୍ର ପାଖକୁ କୁଆଡ଼େ ବୟସ୍କାମାନେ ଆସିବାକୁ ଡରିଥିଲେ । ଯେହେତୁ ସେଇ ପୂଜାରେ 'ଏଇପରି ଆମ ସଂପର୍କ' ପତ୍ରିକାରେ ଆପଣ ଲେଖିଥିଲେ ସେହି ସତ ଚରିତ୍ରର ମିଛ ବୟସ୍କା ପ୍ରେମିକାମାନଙ୍କୁ ନେଇ ଗପ । କହିବାରେ ଦ୍ୱିଧା ନାହିଁ, ସେ ଚରିତ୍ର ଥିଲି ମୁଁ । ଆପଣ ଲେଖିଥିଲେ 'ସୂର୍ଯ୍ୟ ଦେଓଙ୍କ ବୟସ୍କା ପ୍ରେମିକାମାନେ' । ଏମିତି ସତ ଚରିତ୍ରକୁ ମିଛ କଳ୍ପନା ଦେଇ ଅନେକ ରକମର ବାଜି ଆପଣ ଜୀବନସାରା ଖେଳିଛନ୍ତି । କେବେ ବି କେଉଁଠି ହାରି ନାହାନ୍ତି ବୋଲି ଅନ୍ୟକୁ ଆପଣ ହରାଇଛନ୍ତି ବାଜିରେ । ଗୀତ ତଥ୍ୟକୁ ନେଇ ମୁଁ ବି ହାରିଛି ଆପଣଙ୍କ ପାଖରେ । ଯଦିଓ ଓଡ଼ିଆ ଗୀତର ନାଡ଼ି, ନକ୍ଷତ୍ର ଜାଣିଛି ବୋଲି ମୋର ଅହଂକାର ଥିଲା, ସେ ଅହଂକାର କିନ୍ତୁ ଚୁରମାର୍ ହୋଇଥିଲା ଆପଣଙ୍କ ବାଜିରେ । କଥାରେ କଥାରେ ଆପଣ ବାଜି ପକଉଥିଲେ ଅଧିକ, ଜିତୁଥିଲେ କିନ୍ତୁ ସବୁଥର ।

ସୁରେଶ ଭାଇ ! ଅତି ଉଗ୍ର ଆତ୍ମସମ୍ମାନ ଥିଲା ଆପଣଙ୍କର ! ଥରେ ମୋର ଏକ ବ୍ୟକ୍ତିଗତ ସୁପାରିଶର ଦରକାର ଥିଲା । ନରଣଗଡ଼ର ଶିଳ୍ପପତି ଶ୍ରୀନିବାସ ପାଇକରାୟଙ୍କ ସାମ୍ନାରେ ଆପଣ ମୋର ଉଚ୍ଛ୍ୱସିତ ପ୍ରଶଂସା କରିସାରି ତାଙ୍କୁ କହିଲେ: ଆପଣଙ୍କ ସିନେମାର ସବୁ ଫଟୋ, ସିନେମାର ଯେତେ ମ୍ୟାଗାଜିନ ସୂର୍ଯ୍ୟଙ୍କୁ ଦିଅନ୍ତୁ । ଆପଣ ଦେଲେ ଭଲ, ନଦେଲେ ସେସବୁ

ଭଳ ଚରିଯିବ। ଅନ୍ୟ କେଉଁଠାରୁ ବି ସେସବୁ ଯୋଗାଡ଼ ହୋଇପାରେ।

ଅଥଚ ଆପଣ ନିଜେ ମୋତେ କହିଥିଲେ କେତେ ସଂଭ୍ରମତାର ସହ ଶ୍ରୀନିବାସ ପାଇକରାୟଙ୍କୁ ଆପଣ ସାମ୍ନା କରନ୍ତି। ମୁଁ ଅବାକ ହୋଇଥିଲି ଆପଣଙ୍କ ସମ୍ମାନବୋଧ ଓ ବାକ୍‌ଚାତୁରୀରେ! ସେ ବି ତାଜୁବ୍ ହେଲେ। କେତେକ ଫଟୋ ଆଣି ଦେଲେ। ଆପଣ କହିଲେ: ଆଉ ପତ୍ରିକା? ସେ ହଟ୍‌ପଟ୍ ହେଲେ, କହିଲେ: ଅଧା ନଷ୍ଟ ହୋଇଯାଇଛି। ଆପଣ କହିଲେ: ସେଇ ନଷ୍ଟ ପତ୍ରିକା ହିଁ ଦରକାର। ସେ ଆଣିଦେଲେ ଗଦାଏ ଓଡ଼ିଆ ସିନେମା ମ୍ୟାଗାଜିନ୍। ମୋ ହାତକୁ ଆସିଲାବେଳକୁ ସେଥିରୁ ଅଧା ପାଣି ବାହାରି ଯାଇଛି। ପୂରା ବତୁରିଯାଇଛି ବହି। ସେସବୁକୁ ନେଇ ଆମେ ଫେରିଥିଲୁ।

ଆପଣ ଜାଣନ୍ତି ସୁରେଶଭାଇ, ସେହି ଓଦା ମ୍ୟାଗାଜିନ୍ ସବୁରେ ସୋନୁର ଆଗଦିନ କିଣିଥିବା ପରଫ୍ୟୁମ୍ ସ୍ପ୍ରେ କରି, ପୃଷ୍ଠା ପରେ ପୃଷ୍ଠାକୁ ପ୍ରେସ୍ କରି ମୁଁ ଶୁଖାଇଥିଲି। ବିନା ସ୍ପ୍ରେ କରି ପ୍ରେସ୍ କରିଥିଲି ବୋଲି ଉତ୍କଟ ଗନ୍ଧ ବାହାରିଥିଲା ଆଗ। ସୋନୁର ଦାମୀ ଆଉ ନାମୀ ପରଫ୍ୟୁମ୍ ପୁରା ସରିଯାଇଥିଲା। ଏକ ବିଚିତ୍ର ବାସ୍ନା ଚହଟିଥିଲା ଘରସାରା। ସେ ବାସ୍ନା ଭଲ ଲାଗୁଛି ବୋଲି କହିବାରୁ ସୁବୁନ୍‌କୁ ଯାଛାତା ବକିଥିଲା ସୋନୁ। ଦାମୀ ପରଫ୍ୟୁମ୍‌କୁ ଏମିତି ନଷ୍ଟ କରିଦେଲ ବୋଲି କହି ମୋ ଉପରେ ଗରଗର ହୋଇଥିଲା। ଆଜିକାଲି ଯେତେବେଳେ ମୁଁ ସେ ମ୍ୟାଗାଜିନ୍ ସବୁ ଖୋଲୁଛି, ସେହି ବିଚିତ୍ର ବାସ୍ନା ଚହଟୁଛି ଘରସାରା। ସୋନୁ ଗରଗର ହେଉଛି, ସୁବୁନ ଖୁସି ହେଉଛି। ଆପଣ ଆଉ ନାହାନ୍ତି, ଏହି ଖବର ପାଇଲା ପରେ ଗାଢ଼ ରାତିରେ ମୁଁ ସେହି ପତ୍ରିକାସବୁକୁ ଖୋଲିଥିଲି। ଆଉଥରେ ସେଇ ଚିହ୍ନା ବିଚିତ୍ର ବାସ୍ନା ଚହଲିଗଲା। ସୋନୁ ଶୋଇବାଘରୁ ଆସିଲା ପଢ଼ାଘରକୁ। ଜୋରରେ ଗରଗର ହେଲା। ମୁଁ କହିଲି ସୁରେଶ ଭାଇ ଆଉ ନାହାନ୍ତି। ସୋନୁ ଆହୁରି ଗରଗର ହେଲା, କହିଲା: ମିଛ! ମିଛ ବୋଲି ତମେ ଏ ମିଛ କଥା ଏଯାଏ ମୋତେ କହିନ, ପରଫ୍ୟୁମ ନଷ୍ଟ କରିଥିଲ ବୋଲି ପୁଣି ରାଗିବି ବୋଲି ତମେ ଏବେ ବାହାନା କରି ସୁରେଶଭାଇଙ୍କୁ ବି ମାରିଦେଉଛ। ମିଛ, ସବୁ ମିଛ।

ସୁରେଶଭାଇ! ମୁଁ ତାକୁ କେମିତି ବୁଝାଇଥାଆନ୍ତି, ଯାହା ମୋ ପାଇଁ ସତ, ତାହା ତା' ପାଇଁ ମିଛ ନୁହେଁ।

ସବୁ ସତ, ମିଛ ହୋଇଗଲେ ଅବଶିଷ୍ଟ ଆୟୁସ କେତେ ସୁରୁଖୁରୁରେ କଟିଯାନ୍ତା ପ୍ରିୟ ସୁରେଶଭାଇ!





# ଏକ ବହୁମୁଖୀ ପ୍ରତିଭା

## ଡ.ଦିଲ୍ଲୀପ ଶ୍ରୀଚନ୍ଦନ

ସୁରେଶ ବଳବନ୍ତରାୟ ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ । ଏକାଧାରାରେ ଜଣେ ଗାଳ୍ପିକ, ନାଟ୍ୟ ସମୀକ୍ଷକ, ଗୀତିକବି, ଚିତ୍ରକର ଭାବେ ସେ ନିଜର ଦକ୍ଷତା ପ୍ରତିପାଦନ କରିପାରିଛନ୍ତି । ବିଶେଷକରି ବିଭିନ୍ନ ଅନୁଷ୍ଠାନ ସହିତ ସମ୍ପୃକ୍ତ ହୋଇ ନିଜ ସାଙ୍ଗଠନିକ ଦକ୍ଷତାର ପରିଚୟ ମଧ୍ୟ ଦେଇଛନ୍ତି । ଅକ୍ଷୟ ମହାନ୍ତି ଫାଉଣ୍ଡେସନର ମୁଁ ପ୍ରତିଷ୍ଠାତା ସଭାପତି ଥିବାବେଳେ ସେ ଉପସଭାପତି ଥିଲେ । ସେହିବେଳେ ପ୍ରତ୍ୟେକ କାର୍ଯ୍ୟ ପ୍ରତି ତାଙ୍କର ଯେଉଁ ଆନ୍ତରିକତା, ନିଷ୍ଠା ତାହାର ପରିଚୟ ମୁଁ ପାଇପାରିଥିଲି । ନାଟ୍ୟ ଚେତନା, ନାଟ୍ୟାଲୋକ, ନୃତ୍ୟ ପ୍ରତିଭା ଆଦି ବହୁ ଅନୁଷ୍ଠାନ ସହିତ ଜଡ଼ିତ ହୋଇ ସେ ଅନେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିଛନ୍ତି । ଆକାଶବାଣୀ କଟକ କେନ୍ଦ୍ରର ଜଣେ ସ୍ୱୀକୃତି ପ୍ରାପ୍ତ ଗୀତିକବି ଭାବେ ସେ ଗୀତି କବିତା ରଚନା କରିବାରେ ନିଜ ଦକ୍ଷତାର ପରିଚୟ ଦେଇଛନ୍ତି । ସେ ମୋର ପଡ଼ୋଶୀ ଗାଁର ଭାଇ ଥିଲେ । ତାଙ୍କ ଘର ଖୋର୍ଦ୍ଧା ଜିଲ୍ଲା ନରଣଗଡ଼ରେ । ଯୋଉ ଗାଁର ଅନେକ ସୁଯୋଗ୍ୟ ବ୍ୟକ୍ତି ସାହିତ୍ୟ ସଂସ୍କୃତିକୁ ଉଜ୍ଜିବୀତ କରିବା ପାଇଁ ସଦାସର୍ବଦା କାର୍ଯ୍ୟ କରୁଛନ୍ତି । ସେମାନଙ୍କ ମଧ୍ୟରୁ ସୁରେଶ ବଳବନ୍ତରାୟ ଥିଲେ ଅନ୍ୟତମ । ତାଙ୍କ ଗାଁଠାରୁ ମୋ ଗାଁ ଗୟାବନ୍ଧର ଦୂରତା ମାତ୍ର ୪କି.ମି. । ତେଣୁ ବାଲ୍ୟ ସମୟରୁ ଆମ ଭିତରେ ସୁସମ୍ପର୍କ ଥିଲା । ବିଭିନ୍ନ ସମୟରେ ଆମେ ସାହିତ୍ୟ ସଭା, ସାଂସ୍କୃତିକ କାର୍ଯ୍ୟକ୍ରମ କରିବା ପାଇଁ ଏକାଠି ହେଉଥିଲୁ । ତାଙ୍କ ଭିତରେ ଆଗମୀ ଦିନ ପାଇଁ ଅନେକ ସ୍ୱପ୍ନ ମଧ୍ୟ ଥିଲା । ନିଜ ଗାଁ ନରଣଗଡ଼ରେ ଗଡ଼ ମହୋତ୍ସବଟିଏ କରିବା ପାଇଁ ଆମେ ବହୁବାର ଆଲୋଚନା କରିଛୁ ।

ସେହିପରି ଗାଁର ଏକ ମହାଦେବ ମନ୍ଦିରଟିଏ ନିର୍ମାଣ କରିବା ପାଇଁ ସେ ମଧ୍ୟ ଚିନ୍ତା କରିଥିଲେ । ଏହିପରି ତାଙ୍କର ଅନେକ ସ୍ୱପ୍ନ ସ୍ୱପ୍ନରେ ରହିଗଲା । କାରଣ ତାଙ୍କର ଅକାଳ ବିୟୋଗ ସମସ୍ତ ସ୍ୱପ୍ନକୁ ସାକାର କରିବାରେ ବାଧକ ସୃଷ୍ଟି କଲା । ମୁଁ ତାଙ୍କ ବିୟୋଗରେ ବିଶେଷ ମର୍ମାହତ । ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ତାଙ୍କ ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କରୁଛି । ପ୍ରଭୁ ତାଙ୍କ ଧର୍ମପତ୍ନୀ, ଝିଅ ଓ ଦୁଇପୁଅଙ୍କୁ ଭଲରେ ରଖନ୍ତୁ ।

କ୍ୱାଟର ନଂ-୨ଆର.ବି.-୨/୮, ଗୋପବନ୍ଧୁ ସ୍କୋୟାର, ୟୁନିଟ-୮,
ଭୁବନେଶ୍ୱର-୧୨
ମୋ:୯୪୩୭୨୮୭୮୦୬





# ଶବ୍ଦ ଓ ରଙ୍ଗର ବାଂଙ୍‌ମୟ ଦିଗ୍‌ବଳୟ ସୁରେଶ ବଳବନ୍ତରାୟ

ସଂଜୟ ଭଟ୍ଟ

ତାଙ୍କ ଚିନ୍ତା ଓ ଚେତନାରେ ଥିଲା ସ୍ୱାଭିମାନର ସ୍ୱଚ୍ଛ ସ୍ୱାକ୍ଷର । ଶବ୍ଦ ଆଉ ରଙ୍ଗ ପାଇଁ ସର୍ବଦା ବ୍ୟାକୁଳ ଥିଲା ତାଙ୍କ ଅନ୍ତଃସ୍ୱର । ବିତର୍କ ଭିତରେ ଉତ୍କର୍ଷର ସାରସ୍ୱତ ସନ୍ଧାନ ଥିଲା ତାଙ୍କ ସୃଜନୀର ଲକ୍ଷ୍ୟ। ସାଧାରଣଙ୍କ ପାଇଁ ଯାହା ଅଜ୍ଞାତ, ତାକୁ ସେ ଅନାୟାସରେ ଅନାବରଣ କରିପାରୁଥିଲେ ନିଜର ପ୍ରଖର ଜିଜ୍ଞାସା ଶକ୍ତିରେ , ସେ ଥିଲେ ଓଡିଆ ସଂସ୍କୃତିର ପ୍ରବହମାନ ଧାରାରେ ଜଣେ ସୁଦକ୍ଷ ନାବିକ । ଜୀବନର ମହତ୍ତର ସତ୍ୟକୁ ସେ ଆବିଷ୍କାର କରିପାରିଥିଲେ ସର୍ଜନାର ସ୍ୱର୍ଣ୍ଣିମ ପର୍ବରେ । ଅନୁଭୂତି ଓ କଳ୍ପନାର ସମ୍ମିଶ୍ରଣରେ ସୃଜନୀ ତାଙ୍କର ବେଶ କମନୀୟ । ଚରିତ୍ରମାନଙ୍କୁ ରୂପାନ୍ତରିତ କରିବାରେ ସେ ଥିଲେ ଏକ ବିରଳ ବ୍ୟତିକ୍ରମ । ଏକ ସମ୍ବେଦନଶୀଳ ହୃଦୟ ନେଇ ତାଙ୍କୁ ପଢିଲେ, ଫିଟି ପଡେ କେତେ କେତେ ଗମ୍ଭିରାର କୋଳପ। ସେ ଥିଲେ ଅପ୍ରତିଦ୍ୱନ୍ଦୀ ତଥା ସ୍ୱତନ୍ତ୍ର ସ୍ରଷ୍ଟା । ଓଡିଆ ମାଟିର ଗର୍ବ ଓ ଗୌରବ । ଆଗାମୀ ସୃଜନ ଶିଳ୍ପର ପ୍ରତିଶ୍ରୁତିବଦ୍ଧ ପ୍ରେରଣା ଓ ପ୍ରତ୍ୟୟ ।

ସତରେ ସେ ଥିଲେ ଶବ୍ଦ ଓ ରଙ୍ଗର ବାଂଙ୍‌ମୟ ଦିଗ୍‌ବଳୟ ସୁରେଶ ବଳବନ୍ତରାୟ ।

ଝାପ୍‌ସା ଝାପ୍‌ସା ମନେ ପଡୁଛି ମୋର ଦୀର୍ଘ କୋଡିଏ ବର୍ଷର ସ୍ମୃତି । ସେ ବର୍ଷ ଥିଲା ଜୁନ କି ଜୁଲାଇ ମାସ ୧୯୯୯ ମସିହାର କଥା । ବାହାରେ ବର୍ଷାର ଝିପ୍ ଝିପ୍ ଅଙ୍ଗରାଗ । ଗୁରୁ ଡ. ଦିନନାଥ ପାଠୀଙ୍କ ବାସଭବନ 'ଅବନ୍ତୀ'ର ଡ୍ରଇଁରୁମର ସୋଫାରେ ଆମେ ବସିଥାଉ ପାଠୀ ସାରଙ୍କ ସହିତ ଡା. ରମେଶ ପାଣି ସାର୍ ଆଉ ମୁଁ । କଥାବାର୍ତ୍ତା ଚାଲିଥାଏ । ପାଠୀ ସାରଙ୍କ ପାଖକୁ ଡା. ରମେଶ ପାଣି ସାରଙ୍କ ସହ ମୁଁ ଯାଇଥାଏ ସେ ବର୍ଷର ପୂଜା ପତ୍ରିକା 'ପଦ୍ମପାଦ'ର ଦ୍ୱିତୀୟ ସଂଖ୍ୟା ପାଇଁ ପାଠୀ ସାରଙ୍କର ସାକ୍ଷାତକାରଟିଏ ନେବାକୁ । ସାଂସଦ କବି ଡ. ପ୍ରସନ୍ନ ପାଟଶାଣୀ ଥିଲେ 'ପଦ୍ମପାଦ' ପତ୍ରିକାର ପ୍ରତିଷ୍ଠାତା ସମ୍ପାଦକ । ରମେଶ ପାଣିଙ୍କ ସଂପାଦନାରେ ମୁଁ କାର୍ଯ୍ୟନିର୍ବାହୀ ସଂପାଦନା ଓ କଳା ନିର୍ଦ୍ଦେଶନାର ଦାୟିତ୍ୱ ନିର୍ବାହ କରୁଥାଏ । ହଠାତ୍ ବର୍ଷାରେ ଦରଓଦା ହୋଇ ପାଠୀ ସାରଙ୍କ ଡ୍ରଇଁ ରୁମ୍ ଭିତରକୁ ପଶି ଆସିଲେ ଜଣେ ଶ୍ୟାମଳ ବର୍ଣ୍ଣର ଭଦ୍ର ବ୍ୟକ୍ତି । ପାଠୀ ସାରଙ୍କୁ ନମସ୍କାର କରି ସେ ରମେଶ ପାଣି ସାର୍ ବସିଥିବା ସୋଫାରେ ବସି ପଡିଲେ ଓ ପାଣି ସାରଙ୍କ ସହ କରମର୍ଦ୍ଦନ କଲେ । ସେଇଠି ପାଠୀ ସାର୍ ତାଙ୍କ ସହ ପରିଚୟ କରେଇଦେଇଥିଲେ ମତେ । ମୁଁ ତାଙ୍କୁ ସସମ୍ମାନ ନମସ୍କାର କଲି । ସ୍ମିତ ହସି ସେ ମତେ କହିଲେ– ମୁଁ ତମକୁ ଜାଣେ ସଂଜୁ, ତମର ଚିତ୍ର ମୁଁ ଦେଖୁଛି 'ନବରବି' ପତ୍ରିକାରୁ । ଆମ ସମୟର ତମେ ତ ଜଣେ ଚମ୍ପିଆନ୍ ଟୋକା । ମତେ ଖୁବ୍ ଲାଜ ଲାଗିଥିଲା ସେଦିନ ।

ସେଦିନର ସେଇ ଭଦ୍ରବ୍ୟକ୍ତି ଜଣଙ୍କ ଆଉ କେହି ନଥିଲେ,ସେ ଥିଲେ ଓାନ ଆଣ୍ଡ ଓନଲି ଶ୍ରୀ ସୁରେଶ ବଳବନ୍ତରାୟ । ସାହିତ୍ୟିକ, ଚିତ୍ରକର ଏବଂ ନାଟ୍ୟକାର। ଏମିତି ଅନେକ ତାଙ୍କର ପରିଚୟ । ମୋ ପାଇଁ ତାଙ୍କର ସବୁଠୁ ବଡ ପରିଚୟ ଥିଲା, ଜଣେ ବିଶାଳ ହୃଦୟର ଶିଳ୍ପୀ ।

ସମୟକ୍ରମେ ସୁରେଶ ଭାଇଙ୍କ ଚିତ୍ର, ଲେଖା ଆଉ ନାଟକର ମୁଁ ତ ଜଣେ ମୁଗ୍ଧ ପ୍ରସଂଶକ ପାଲଟି ଗଲି । ଆଉ ସେ ମୋ ପାଇଁ ପାଲଟିଗଲେ ପ୍ରେରଣା । ଯେବେ ବି ମୁଁ ପତ୍ରିକା ସଂପାଦନା କରିଛି ସେବେ ମୁଁ ସୁରେଶ ଭାଇଙ୍କଠାରୁ ପରାମର୍ଶ ନେଇଛି । ସେ ବି ମତେ ବୁଝେଇ ଦେଇଛନ୍ତି ସଂପାଦନାର ସୂତ୍ର । ସୁରେଶ ଭାଇଙ୍କ ଫିଚରରେ କେମିତି ଚମତ୍କାରିତାର ବାସ୍ନାଥାଏ ପ୍ରତିଟି ପଂକ୍ତିରେ । ଲକ୍ଷ୍ୟ କରିଛି ସୁରେଶ ଭାଇ ଥିଲେ ଅଜାତଶତ୍ରୁ । ଖ୍ୟାତନାମା କବି ରକ୍ଷକ ନାୟକ, 'ବିଶ୍ୱମୁକ୍ତି' ପତ୍ରିକାର ପରିଚାଳନା ସଂପାଦକ ବନ୍ଧୁ ସୁଧୀର ମଉଡମଣି (ଟୁବ), ଆଉ ମୁଁ ଏକାଠି କଟେଇଛୁ ଅନେକ ବର୍ଣ୍ଣିଳ ସାରସ୍ୱତ ସଂଧ୍ୟା , ଶିକ୍ଷାଗୁରୁ ତଥା ବିଖ୍ୟାତ ଚିତ୍ରଶିଳ୍ପୀ ପ୍ରଫେସର ବଳଦେବ ମହାରଥୀଙ୍କର ସରକାରୀ କ୍ୱାର୍ଟରର ଆଉ ପୁରୁଣା ବସଷ୍ଟାଣ୍ଡ ଖଟିରେ ।

ଯଥାର୍ଥରେ କହିବାକୁ ଗଲେ ସୁରେଶ ବଳବନ୍ତରାୟ ମୋ ପାଇଁ ଥିଲେ ଏକ ଅଦୂର ଦିଗ୍‌ବଳୟ , ଯେଉଁ ଦିଗ୍‌ବଳୟରେ ଏବେ ମୁଁ ଖୋଜିପାଏ ଶବ୍ଦ ଆଉ ରଙ୍ଗର ମଧୁ ଜହ୍ନ ।



# ସପନ ବିକାଳି

ବାଦଲ ମହାନ୍ତି

ଖଟିରେ ଶୁଭେନାହିଁ ଏ ଡ଼ାକ-
ସ୍ୱପ୍ନ ନେବ ହୋ' ସ୍ୱପ୍ନ।

ବାସ୍ତବତାର ସେମେଟୀ, ଚେପା
ଓ ଲୋଚାକୋଚା ବେଲୁନ୍‌କୁ
ଗୋଟେ ଫୁ'ରେ
ସୁନ୍ଦର ଆକାର ଦେଉଥିବା ଲୋକର
ପୁଣି ସ୍ମରଣିକା ବହି ଛାପା ହେବ
ସେଇକଥାକୁ ନେଇ ସମସ୍ତେ ବ୍ୟସ୍ତ !

ପିଲାଟିର ମୁଣ୍ଡରେ ଗଳୁନି
ଏତେ ସବୁ କଥା
ସେ ଚୁପ୍‌ଚାପ୍ ବସିଛି
ଓସ୍ତଗଛ ମୂଳେ ଏକା ଏକା
ମୁଣ୍ଡପାଖେ ଥୋଇ ଜୀବନ କେନ୍ଦେରା।

କଥା ଥିଲା ଶିଖେଇବ ଗୀତ
ହେଲେ, ଏ କି ନିଦ ଯୋଗୀପୁଅ !
ଉଠ, ଗାଅ
ନହେଲେ ଚିତ୍ରଟେ ଆଙ୍କ
ହେ ବିଚିତ୍ର ଚିତ୍ରକର !

ଭଞ୍ଜୁ କିନା ରାମ ନାମରେ କୁମର..
କି କପିଳା ବୋଲିଣ ଗାଈ ସେ
ସଦା ସର୍ବଦା ଯୁବା....
ତୁମ ବିନା କେମିତି କଟିବ
ଏ ଭାବ-ଅଭାବୀ ସଂସାରର
ଖାଁ ଖାଁ ଖରାବେଳ ?

ଷଡ଼ତତ୍ୱ, ଗୁଢତତ୍ୱ, ମୂଢତତ୍ୱ
ଗେଣ୍ଡାଗୁଡ଼।
ସବୁ ବେକାର
ସ୍ୱପ୍ନ ଦେଖିବା ଆ...
ଭୋଜି କରିବା ଆ...
କଫି ହାଉସ୍ କରିବା ଆ
କାହାର ଏ ଡ଼ାକ ?
ଓହୋ ! ଗଲା ନିଦ ଭାଙ୍ଗିଗଲା
କାହିଁକି ଏମିତି ଫି'ରାତିରେ
ଦହଗଞ୍ଜ କରେ କେଜାଣି
ଏ ସପନ ବିକିଲାବାଲା !

ପ୍ଲଟ ନଂ- ୫୧୩, ନୂଆସାହି
ନୂଆପଲ୍ଲୀ, ଭୁବନେଶ୍ୱର-୧୨
ମୋ: ୯୭୭୮୦୩୫୭୬୭



# ସୁରେଶ ବାବୁଙ୍କ ସହିତ କିଛିଦିନ

ଡ. ପ୍ରସନ୍ନ କୁମାର ମିଶ୍ର

ସୁରେଶ ବାବୁଙ୍କ ସହିତ ଯଦିଓ ଦେଖା ହୋଇନଥିଲା କିନ୍ତୁ ସେ ସମସ୍ତଙ୍କର ଜଣେ ପରିଚିତ ବ୍ୟକ୍ତି ଥିଲେ । ତାଙ୍କର ଅନେକ ଲେଖା ମୁଁ ପତ୍ରପତ୍ରିକାରୁ ପଢ଼ିଥିଲି । ତାଙ୍କ ସହିତ ଦେଖା କରିବା ପାଇଁ ମୁଁ ବହୁତ ଇଚ୍ଛୁକ ଥିଲି । ସୌଭାଗ୍ୟବଶତଃ ତାଙ୍କ ସହିତ ଦେଖା ହୋଇଗଲା । ଆମ 'ଉତ୍ତରପୁରୁଷ' ନାଟ୍ୟସଂସ୍ଥାର ଏକ ନାଟକ ରିହର୍ସାଲଠାରେ । ସେଇଠାରେ ମୁଁ ତାଙ୍କ ସହିତ ମିଶିଥିଲି । ଏକ ବଙ୍ଗଳା ନାଟକକୁ ଓଡ଼ିଆରେ ଅନୁବାଦ କରି ସେ ଏକ ପତ୍ରିକାରେ ଛାପିଥିଲେ । ସେ ନାଟକଟିର ନାମ ଥିଲା "ଧଡ଼ି ରାମାୟଣ" । ତାଙ୍କଠାରୁ ଅନୁମତି ଆଣି ଆମେ ସେ ନାଟକଟିକୁ ମଞ୍ଚସ୍ଥ କରିବା ପାଇଁ ପ୍ରସ୍ତୁତ ହେଉଥିଲୁ । ସେ ମଧ୍ୟ ବହୁତ ଆଗ୍ରହ ପ୍ରକାଶ କରି ନାଟକଟିକୁ ମଞ୍ଚସ୍ଥ କରିବା ପାଇଁ ଅନୁମତି ଦେଇଥିଲେ । ସେ ପ୍ରତିଦିନ ଆମ ରିହରସାଲକୁ ଆସି ଆମକୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଆବଶ୍ୟକସ୍ଥଳେ ନାଟକର କିଛି ଅଂଶ ମଧ୍ୟ ପରିବର୍ତ୍ତନ କରୁଥିଲେ । ସେଇ ନାଟକରେ ମୁଁ ରାବଣ ଭୂମିକାରେ ଅଭିନୟ କରୁଥିଲି ଏବଂ ସେ ନାଟକଟିକୁ ଦେଖିଲା ପରେ ମତେ କହିଲେ- ମିଶ୍ରବାବୁ, ମୁଁ ଏ ନାଟକଟିକୁ ନେଇ କଲିକତାରେ ମଞ୍ଚସ୍ଥ କରିବି ଏବଂ ଏ ନାଟକର ମୂଳ ଲେଖକ ଯେ କି ଏହି ନାଟକଟିକୁ ବଙ୍ଗଳା ଭାଷାରେ କଲିକତାରେ କରିଥିଲେ ତାଙ୍କୁ ଡାକି ଦେଖେଇବି । କିନ୍ତୁ ତାଙ୍କର ସେ ଇଚ୍ଛା ଅଧୁରା ରହିଗଲା । ଆଉଥରେ ମଧ୍ୟ ତାଙ୍କର ଅନ୍ୟ ଏକ ଅନୁବାଦ ନାଟକ "ଅପରେସନ ଭଅଁରାଗଡ଼"କୁ ମଧ୍ୟ ଆମ ଉତ୍ତରପୁରୁଷ ସଂସ୍ଥା ମଞ୍ଚସ୍ଥ କରୁଥିଲା, ଯାହାର ନିର୍ଦ୍ଦେଶନା ଦାୟିତ୍ୱ ନେଇଥିଲେ ସୂର୍ଯ୍ୟ ମହାନ୍ତି । ପ୍ରତିଦିନ ସେ ରିହର୍ସାଲକୁ ଆସନ୍ତି ଏବଂ ସୂର୍ଯ୍ୟ ମହାନ୍ତିଙ୍କ ସହିତ ଆଲୋଚନା କରି ନାଟକଟିରେ ଆବଶ୍ୟକୀୟ ପରିବର୍ତ୍ତନ ମଧ୍ୟ କରନ୍ତି । କୌଣସି କାରଣରୁ ସୂର୍ଯ୍ୟ ମହାନ୍ତି ଏହି ନାଟକରୁ ଦୂରେଇ ଯିବାକୁ ଚାହିଁଲେ । ଆମେ ସବୁ ସୁରେଶ ବାବୁଙ୍କୁ ଅନୁରୋଧ କଲୁ ସୂର୍ଯ୍ୟ ବାବୁଙ୍କୁ ବୁଝାଇବା ପାଇଁ । ତାଙ୍କର ଅନୁରୋଧ ରକ୍ଷାକରି ସୂର୍ଯ୍ୟ ବାବୁ ପୁଣି ରାଜି ହୋଇ ନିର୍ଦ୍ଦେଶନା ଦେଇଥିଲେ । ମୋତେ ଥରେ ସେ ତାଙ୍କ ଘରକୁ ନେଇଥିଲେ । ତାଙ୍କର ଘର ଦେଖି ମତେ ଲାଗିଲା ଯେମିତି ମୁଁ ଏକ ସଂଗ୍ରହାଳୟ ଦେଖୁଛି । ବିଭିନ୍ନ ପତ୍ରପତ୍ରିକାରେ ପୂର୍ଣ୍ଣ ସେ ଘର ମଧ୍ୟରେ ବିଭିନ୍ନ ଧରଣର କଣ୍ଢେଇ ଦେଖି ମୁଁ ବିମୋହିତ ହୋଇଯାଇଥିଲି । ପଚାରିଥିଲି- ଏସବୁ କଣ୍ଢେଇ କେଉଁଠାରୁ ସଂଗ୍ରହ କଲେ ? ସେ କିଛି ନ କହି ଖାଲି ହସି ଦେଇଥିଲେ । ଆଉ ଦିନେ ତାଙ୍କ ସହିତ ଚଉଷଠୀ ଯୋଗିନୀ ମନ୍ଦିର ବୁଲି ଯାଇଥିଲି ମୋ ସ୍ତ୍ରୀଙ୍କ ସହିତ । ସେ ସେଇ ମନ୍ଦିର ବିଷୟରେ ଏତେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରି ଆମକୁ ବୁଝାଇ ଦେଇଥିଲେ ଯେ ତାହା ମୋତେ ଅଭିଭୂତ କରିଥିଲା । ବେଳେବେଳେ ସୁରେଶ ବାବୁଙ୍କ ଉପରେ ମୋର ଈର୍ଷା ହୁଏ କାରଣ ସର୍ବଭାରତୀୟ ପ୍ରଶାସନିକ ସେବାରେ ଥାଇ ମଧ୍ୟ ସେ ଓଡ଼ିଶାର କଳା-ସଂସ୍କୃତି ସହିତ ନିବିଡ଼ ଭାବରେ ଜଡ଼ିତ ଥିଲେ । କେମିତି ସେ ସମୟ ବାହାର କରି ଏହି ସବୁ କାମ କରିପାରୁଥିଲେ ତାହା ମୋତେ ଆଶ୍ଚର୍ଯ୍ୟ କରିଥିଲା । ପୁରୁଣା ବସଷ୍ଟାଣ୍ଡର ଲେଖକ ଖଟି ହେଉ କି ଯେ କୌଣସି ସାହିତ୍ୟ ସଭା ହେଉ ସବୁଠାରେ ତାଙ୍କୁ ଦେଖା ମିଳୁଥିଲା ଏବଂ ଏତେ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ନିଜର ଲେଖା ବିଭିନ୍ନ ପତ୍ରପତ୍ରିକାରେ ନିୟମିତ ପ୍ରକାଶିତ କରୁଥିଲେ । ହଠାତ୍ ତାଙ୍କର ବିୟୋଗର ସମ୍ବାଦ ଖବରକାଗଜରୁ ପଢ଼ି ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି କାରଣ ବିୟୋଗର ମାତ୍ର ଦୁଇ ତିନି ଦିନ ଆଗରୁ ତାଙ୍କ ସହିତ ମୋର ଦେଖା ରବୀନ୍ଦ୍ରମଣ୍ଡପଠାରେ ହୋଇଥିଲା । ସେବେଠାରୁ ତାଙ୍କର ସେହି ହସ ହସ ମୁହଁ ଆମ ପାଖରୁ ଲୁଚିଗଲା । ତାଙ୍କର ଏହି ପୂଣ୍ୟ ଜନ୍ମତିଥିରେ ଭଗବାନଙ୍କଠାରେ ଏତିକି ପ୍ରାର୍ଥନା ଯେ ତାଙ୍କର ଆତ୍ମା ଯେଉଁଠି ଥାଉ ସୁଖରେ ଥାଉ । ■



# ସୁରେଶ ବଳବନ୍ତରାୟ ଏକ ଅମଳିନ ପ୍ରତିଭା

ଡ. ହେମନ୍ତ କୁମାର ଛୋଟରାୟ

ସୁରେଶ ଭାଇ ଥିଲେ ସାହିତ୍ୟ-ସଂସ୍କୃତିର ଜଣେ ବିରଳ ବିଦ୍ଧାଣୀ । ଏକ ଅନନ୍ୟ ବ୍ୟକ୍ତିତ୍ୱ । ଜଣେ ନିରଳସ ସାଧକ । ଏକ ଅମଳିନ ପ୍ରତିଭା । ଆମ ସମସ୍ତଙ୍କ ପାଇଁ ସେ ଥିଲେ ଜଣେ ସ୍ନେହୀ ମଣିଷ । ସାହିତ୍ୟ, ସଂସ୍କୃତି ଜଗତର ଗୋଟିଏ ଅଲିଭା ଦୀପଶିଖା ଭାବରେ ସେ ଅବର୍ତ୍ତମାନରେ ଏବେ ବି ଚିର ଜାଜ୍ଜ୍ୱଲ୍ୟମାନ ।

ତାଙ୍କର ଜନ୍ମ ଖୋରଧାର ଇତିହାସ ପ୍ରସିଦ୍ଧ ଗ୍ରାମ 'ନରଣଗଡ଼'ରେ । ନାରୟଣଗଡ଼ରୁ ଏହାର ନାମ ନରଣଗଡ଼ ବୋଲି ଐତିହାସିକମାନେ ମତବ୍ୟକ୍ତ କରିଛନ୍ତି । ଖୋରଧା ପାଇକ ବିଦ୍ରୋହରେ ଏହି ଗ୍ରାମର ଦୁର୍ଦ୍ଧର୍ଷ ପାଇକମାନଙ୍କ ବୀରତ୍ୱ ଗାଥା ଅତି ସ୍ମରଣୀୟ ହୋଇ ରହିଛି । ଏହିଭଳି ଏକ ଗାଁରେ ଜନ୍ମଗ୍ରହଣ କରି ସେ ଧନ୍ୟ ହୋଇଛନ୍ତି । ତାଙ୍କ ଗାଁକୁ ମୁଁ ଦୁଇ ତିନିଥର ଯାଇଛି । କାରଣ ସେହି ଗାଁରେ ଆମ ଦାଦାଙ୍କ ଶ୍ୱଶୁର ଘର । ତେଣୁ ମାମୁ ଘରକୁ ମୋର ଯିବା ଆସିବା ଚାଲେ । ସେଇଠି ଦେଖାହୁଏ ସୁରେଶ ଭାଇଙ୍କ ସହ । ଜଣେ ଶାନ୍ତ-ସରଳ ମଣିଷଙ୍କୁ ଦେଖି ମୋର ମଥା ଆପେ ନଇଁଯାଏ । ସେ ମୋତେ ସାନଭାଇ ଭଳି ସ୍ନେହ ଆଦର କରନ୍ତି । "ହେମନ୍ତବାବୁ, ଲେଖାଲେଖି ଚାଲିଛି ତ ?" ଏଭଳି ପ୍ରଶ୍ନକରି ମୋତେ ସେ ଆପଣେଇ ନିଅନ୍ତି । ମୁଁ ତାଙ୍କର ଆପଣାପଣରେ ମୋହିତ ହୁଏ । ତାଙ୍କ ସହ ମିଶିବା ପାଇଁ ମୋର ଅନୁରାଗ ବୃଦ୍ଧି ପାଏ । ହେଲେ ସବୁ ସମୟରେ ତା' ସମ୍ଭବ ହୋଇପାରେନା ।

ସେ ଥିଲେ ପୁରୀ ସାମନ୍ତଚନ୍ଦ୍ରଶେଖର ମହାବିଦ୍ୟାଳୟର ଛାତ୍ର । ଆମ କଣାସ ଅଞ୍ଚଳର ଅନେକ ଛାତ୍ର ତାଙ୍କର ସହପାଠୀ ଥିଲେ । ସେମାନେ ସୁରେଶଭାଇଙ୍କ ସାଂଗଠନିକ ଶକ୍ତି ବିଷୟରେ କହନ୍ତି । ତାଙ୍କ ମଣିଷପଣିଆ କଥା ବଖାଣନ୍ତି । ତାଙ୍କଠାରୁ ଏସବୁ ମହତ ଗୁଣ ସଂପର୍କରେ ଶୁଣି ମୁଁ ସୁରେଶଭାଇଙ୍କ ପ୍ରତି ଅଧିକ ଆକର୍ଷିତ ହୁଏ । ବାସ୍ତବରେ ସେ ଛାତ୍ରଜୀବନରୁ ସାହିତ୍ୟ ଓ ସଂସ୍କୃତିର ସଂଗଠକ ଥିଲେ । ବିଭିନ୍ନ ପତ୍ର-ପତ୍ରିକା ପାଇଁ ଲେଖାଲେଖି କରିବା ଅଭ୍ୟାସ ତାଙ୍କର ଛାତ୍ରଜୀବନରୁ ରହିଥିଲା । ସେ ବିଶେଷକରି ନାଟ୍ୟକଳା ପ୍ରତି ସମ୍ବେଦନଶୀଳ ଥିଲେ । ମୁଁ ନାଟକ ଲେଖୁଥିବାରୁ ତାଙ୍କ ସହ ମୋ ସଂପର୍କ ଘନିଷ୍ଠ ହୋଇପାରିଥିଲା । ମୋର ପ୍ରକାଶିତ ନାଟକ "ଅସତ୍ୟ ଇଲାକାର କାହାଣୀ" ତାଙ୍କୁ ଉପହାର ଦେଇଥିଲି । ସେ ବହୁତ ଖୁସି ହୋଇଥିଲେ । ସେତେବେଳେ ମୋତେ ଆଶୀର୍ବାଦ କରିଥିଲେ । "ହେମନ୍ତ ବାବୁ, ଏମିତି ନାଟକ ଲେଖିଚାଲ । ନୂଆ ନାଟକ ରଚନା କରିବାର ଆବଶ୍ୟକତା ଆମ ଓଡ଼ିଆ ସାହିତ୍ୟ ପାଇଁ ଯଥେଷ୍ଟ ରହିଛି । ତମେ ତ ଜାଣ ଓଡ଼ିଆ ରଙ୍ଗମଞ୍ଚର ପାଦପ୍ରଦୀପ ଲିଭି ଆସିଲାଣି । ତୁମେମାନେ ନାଟକ ଲେଖିଚାଲିଲେ ନାଟ୍ୟ ସାହିତ୍ୟର ସମୃଦ୍ଧି ହେବ ।" ଏମିତି ଅନେକ କଥା ସେଦିନ କହିଥିଲେ । ପରେ ଯେତେଥର ଦେଖାହୁଏ ସେ ମୋତେ ନାଟକ ଲେଖା ବିଷୟରେ ହିଁ ପ୍ରଶ୍ନ କରନ୍ତି । "ନାଟକ ଲେଖା ଚାଲିଛି ତ ?" ତାଙ୍କର ଏହି ପଦେ କଥାହିଁ ମୋତେ ପ୍ରେରଣା ଦେଇଥାଏ । ଲାଗେ ଯେମିତି କିଏ ଜଣେ ଆପଣା ଲୋକ ମୋତେ କିଛି ଉପଦେଶ ଦେଉଛନ୍ତି । ଅନ୍ୟକୁ ଆପଣେଇ ନେବାର କଳାକୁ ସେ ଆୟତ୍ତ କରିଥିଲେ ।

ତାଙ୍କ ଅତିଥିପରାୟଣତାର ପଟାନ୍ତର ନାହିଁ । ବନ୍ଧୁବତ୍ସଳତା ତାଙ୍କର ଗୋଟିଏ ସୁଗୁଣ । ମୁଁ ଯେତେଥର ତାଙ୍କୁ ତାଙ୍କ କାର୍ଯ୍ୟାଳୟରେ ସାକ୍ଷାତ କରିଛି, ସେତେଥର ସେ ମୋତେ ତାଙ୍କର ସରକାରୀ କ୍ୟାଣ୍ଟିନକୁ ଡାକି ନେଇଛନ୍ତି । "କିଛି ହେଲେ ଖାଆନ୍ତୁ ହେମନ୍ତ ବାବୁ ।" ତାଙ୍କର ଏହି ଅନୁରୋଧ ମୋତେ ଆକର୍ଷିତ କରେ । ବାଧ ହୋଇ କିଛି ଖାଇବାକୁ ପଡ଼େ । ଯେତେ ମନାକଲେ ବି ସେ ଛାଡ଼ନ୍ତି ନାହିଁ । ତାଙ୍କର ସେହି ଅତିଥିପରାୟଣତା ମୋର ଆଜିଯାଏଁ ମନେଅଛି । ସୁରେଶ ଭାଇ ଥିଲେ ଲକ୍ଷ୍ମୀବନ୍ତ ମଣିଷ । ମହାଲକ୍ଷ୍ମୀ ପୁରାଣରେ ଉଲ୍ଲେଖ ରହିଛି- ଲକ୍ଷ୍ମୀ ସେହିମାନଙ୍କଠାରେ ରହନ୍ତି :-

"କର୍ତ୍ତବ୍ୟ କର୍ମରେ ଯେହୁ ନ କରଇ ହେଳା,
ପରର ଜୀବନ ନେଇ ନ କରଇ ଖେଳା ।
ଏମନ୍ତ ନାରୀ ପୁରୁଷ ମୋର ପ୍ରାଣପ୍ରିୟ,
ତାହାର ସଦନ ଅଟେ ମୋର ବାସଗୃହ ।"

ସେ କେବେ କାହାର ଅନିଷ୍ଟ ଚିନ୍ତା କରିନାହାନ୍ତି । ନିଜର କର୍ତ୍ତବ୍ୟ କର୍ମ ପ୍ରତି ସେ ସଦାସର୍ବଦା ସଚେତନ ଥିଲେ । ତାଙ୍କ ସରକାରୀ ଦପ୍ତର ପ୍ରକୋଷ୍ଠ ଓ ତା' ସାମ୍ନାରେ ଝୁଲୁଥିବା ତାଙ୍କ ପଦ ଓ ନାମ ଫଳକର ଦୃଶ୍ୟ ଏବେ ବି ମୋର ମନେଅଛି । ଯେତେଦିନ ବିତିଗଲେ ମଧ୍ୟ ସେସବୁ ଦୃଶ୍ୟକୁ କେବେ ଭୁଲି ହେବ ନାହିଁ । ଯେତେଦିନ ତାଙ୍କର କର୍ତ୍ତବ୍ୟ ସଂପାଦନର ଦୃଶ୍ୟ ଆଖି ଆଗରେ ନାଚିଉଠୁଥିବ, ସେତେଦିନ ସୁରେଶ ଭାଇ ମୋ ମନ ଭିତରେ ଥିବେ ।

ଥରେ ସେ ଥିଲେ ପ୍ରାଥମିକ ଶିକ୍ଷା ପାଇଁ ଉଦ୍ଦିଷ୍ଟ ପୁସ୍ତକ କ୍ରୟ କମିଟିର ବିଚାରକ ସଦସ୍ୟ । ମୋର ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ପୁସ୍ତକ "ବାଘ ବାହାଘର" ପାଇଁ ମୁଁ ଦରଖାସ୍ତ କରିଥାଏ । ଯେତେବେଳେ ଜାଣିଲି ସେ ଅଛନ୍ତି ଜଣେ ବିଚାରକ ସଦସ୍ୟ ସିଧା ଚାଲିଲି ତାଙ୍କ ନିକଟକୁ । ସସ୍ନେହେ ସେ ମୋତେ ଅଭୟବାଣୀ ଶୁଣାଇଲେ, "ହେମନ୍ତ ବାବୁ, ତୁମ ପୁସ୍ତକକୁ ମୁଁ ନିଶ୍ଚୟ ଚୟନ କରିବି ।" ତାଙ୍କଠାରୁ ଭରସା ପାଇ ମୁଁ ନିଶ୍ଚିତ ହୋଇଥିଲି ସେଦିନ । କିନ୍ତୁ ଗୋଟିଏ କଥା ଲକ୍ଷ୍ୟକଲି- ସେ ନିଜକୁ ଜଣେ ବଡ଼ ଲୋକ ବୋଲି ଭାବିନଥିଲେ । ତାଙ୍କଠାରେ ଗର୍ବ, ଅହଂକାର ନଥିଲା । ମୋ ଅନୁରୋଧକୁ ସେ ଜଣେ ସାନଭାଇର ନିବେଦନ ବୋଲି ଗ୍ରହଣ କରିନେଇଥିଲେ । ମୋତେ ସେଦିନ ସେ ନିର୍ଭର ପ୍ରତିଶ୍ରୁତି ପ୍ରଦାନ କରିଥିଲେ । କାହାକୁ ନିରାଶ ନକରିବା ଥିଲା ତାଙ୍କର ଅନ୍ୟ ଗୋଟିଏ ମହତପଣିଆ ।

ସେ ଥିଲେ ନିଷ୍କପଟ । ସେ ଥିଲେ ମିଷ୍ଟଭାଷୀ । ସେ ଥିଲେ ମାନବିକତାର ଜୀବନ୍ତ ବିଗ୍ରହ । ସାହିତ୍ୟ- ସଂସ୍କୃତିର ସେ ଥିଲେ ମିଳନ ସ୍ତମ୍ଭ । ସାହିତ୍ୟ ସଂସ୍କୃତିକୁ ପ୍ରାଣଭଳି ଭଲପାଉଥିବା ଜଣେ ନିଷ୍ଠାପର ଉପାସକ ଭାବରେ ତାଙ୍କ ପରିଚିତି ପରିବ୍ୟାପ୍ତ ଥିଲା । ବହୁ ସାଂସ୍କୃତିକ ଉତ୍ସବ ସେ ଆୟୋଜନ କରିଛନ୍ତି ତାଙ୍କ ଜୀବନକାଳରେ । ମଞ୍ଚନାଟକ ପାଇଁ ସେ ଥିଲେ ଉତ୍ସର୍ଗୀକୃତ ପ୍ରତିଭା । ଥରେ ସୂର୍ଯ୍ୟ ଭାଇନା (ସୂର୍ଯ୍ୟ ମିଶ୍ର) ମୋତେ ପଠାଇଥିଲେ ନାଟ୍ୟକାର ରମେଶ ପାଣିଗ୍ରାହୀଙ୍କ ସାକ୍ଷାତକାର ଆଣିବାକୁ "ଅନୁରୂପା" ସାହିତ୍ୟ ପତ୍ରିକା ପାଇଁ । ମୁଁ ରମେଶ ପାଣିଗ୍ରାହୀଙ୍କ ଭଳି ଜଣେ ସୁପ୍ରସିଦ୍ଧ ନାଟ୍ୟକାର ସୁରେଶ ଭାଇଙ୍କର ପ୍ରଶଂସା କରିଥିଲେ । ସୁରେଶ ଭାଇଙ୍କ ପ୍ରତିଭା ସଂପର୍କରେ ରମେଶ ସାରଙ୍କ ମୁଖରୁ ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ବାସ୍ତବରେ ମଞ୍ଚନାଟକ ଓ ଲୋକକଳାର ସୁରକ୍ଷା ପାଇଁ ସେ ଯେଉଁ ଉଦ୍ୟମ କରୁଥିଲେ, ତାହା ନିଶ୍ଚୟ ଆମ ସମସ୍ତଙ୍କ ପାଇଁ ଅବିସ୍ମରଣୀୟ ହୋଇ ରହିବ ।

ସୁରେଶ ଭାଇଙ୍କ ପାର୍ଥିବ ଶରୀର ଅନେକ ଦିନ ତଳୁ ମାଟିରେ ମିଶିଯାଇଥିଲେ ମଧ୍ୟ ସମୟର ଉପତ୍ୟକାରେ ତାଙ୍କ ପାଦଚିହ୍ନ ଏବେବି ଅକ୍ଷତ ରହିଛି । ସେହି ପାଦଚିହ୍ନକୁ ଅନୁସରଣ କରି ଆଜିର ସାହିତ୍ୟ-ସଂସ୍କୃତିପ୍ରେମୀମାନେ ତ୍ୟାଗ ସ୍ୱୀକାର କରିବାକୁ ଆଗେଇ ଆସିଲେ, ତାହାହିଁ ହେବ ତାଙ୍କ ପାଇଁ ଯଥାର୍ଥ ଶ୍ରଦ୍ଧାଞ୍ଜଳି ।

ନାଗାବଗିଚା, ପ୍ରଥମ ଗଳି,
ମଧୁବନ, ପୁରୀ - ୨
ମୋ - ୯୮୬୧୪୭୨୪୫୭



# ଠିକଣା ଜାଣିଚି ହେଲେ ଖୋଜୁଚି... ପାଉନି !

ପ୍ରସନ୍ନ ମିଶ୍ର

ସୁରେଶ ବଳବନ୍ତରାୟ - ଓଡ଼ିଆରେ ଏକ ଜଣାଶୁଣା ନାଁ । ନିହାତି ସରଳ, ଦରଦୀ ମଣିଷଟିଏ । କଳା ସଂସ୍କୃତି କ୍ଷେତ୍ରରେ ସମସ୍ତଙ୍କର ଅତି ପ୍ରିୟ ଏକ ସାଧାରଣ ମଣିଷ କିନ୍ତୁ ଅସାଧାରଣ ତାଙ୍କ ପ୍ରତିଭା । ଉଚ୍ଚଶିକ୍ଷିତ, ସଂଗୀତପ୍ରେମୀ, ନାଟ୍ୟକାର, ଲେଖକ ଏବଂ ସବୁବର୍ଗର ଲୋକମାନଙ୍କୁ ଅନ୍ତରରୁ ଭଲପାଉଥିବା ମଣିଷଟିଏ ସେ ।

କଣ୍ଢେଇ ତାଙ୍କର ଅତି ପ୍ରିୟ । ଅନେକ ଦିନର କଣ୍ଢେଇ ସବୁକୁ ସଂଗ୍ରହ କରି ଘରେ ରଖି କଣ୍ଢେଇ ଘରଟିଏ କରି ଆତ୍ମସନ୍ତୋଷ ଲାଭ କରିଥିଲେ ସିଏ । ନିଶ୍ଚିତ ଭାବରେ ତାଙ୍କର ଏହା ଏକ ସ୍ୱାଗତଯୋଗ୍ୟ ବିଚିତ୍ର ପରିକଳ୍ପନା ଥିଲା ।

ବହୁତ ଦିନରୁ ତାଙ୍କ ସଙ୍ଗେ ମୋର ସଂପର୍କ । ମୋର ଅତି ପ୍ରିୟ ବନ୍ଧୁ ସିଏ । ଏସ୍.ସି.ଏସ୍. କଲେଜ, ପୁରୀରେ ପାଠ ପଢୁଥିବା ସମୟରେ ଆମେ ହଷ୍ଟେଲ ନଂ.-୧ରେ ଏକାଠି ରହୁଥିଲୁ । ସେ ମୋର ଉପର ବ୍ୟାଚ୍‌ରେ ପଢୁଥିଲେ କିନ୍ତୁ ଆମେ ଖୁବ୍ ଭଲ ବନ୍ଧୁ ଥିଲୁ । ମୁଁ ୧୯୭୪/୭୫ ମସିହା କଥା କହୁଛି । ମୁଁ କଲେଜର ଡ୍ରାମାଟିକ୍ ସେକ୍ରେଟାରୀ ଥିଲାବେଳେ ଆମର ସଂପର୍କ ଆହୁରି ଘନିଷ୍ଠ ହୋଇଉଠିଥିଲା । କାରଣ ସ୍ମରଣିକା ଦାୟିତ୍ୱ ସେ ହିଁ ନେଉଥିଲେ । ସେତେବେଳୁ ସେ ଲେଖାଲେଖି ସବୁ କରୁଥିଲେ । ସେ ଲେଖାସବୁ ଅତି ସୁନ୍ଦର ଓ ଜୀବନ୍ତ ଲାଗୁଥିଲା । ଅନେକ ଲେଖା କେତେଥର ସ୍ମରଣିକାରେ ପ୍ରକାଶ ପାଇଥିଲା । ସମ୍ଭବତଃ ସେ ଲେଖାଗୁଡ଼ିକ ମାଧ୍ୟମରେ ଆମେ ଦୁହେଁ ପରସ୍ପରକୁ ଅତି ନିଜର, ଅତି ନିକଟତର ଭାବେ ଦେଖୁଥିଲୁ । ଭଲ ପାଉଥିଲୁ ।

କିଛିଦିନ ଗଡ଼ିଗଲା । ତା'ପରେ ମୋର ତାଙ୍କ ସଙ୍ଗେ ଦେଖାହେଲା ଭୁବନେଶ୍ୱରରେ । ପୁଣି ସେଇ ପୁରୁଣା ସଂପର୍କ ଫେରିଆସିଲା ସଂସ୍କୃତିର ଚର୍ଚ୍ଚା ଆଉ ନାଟକ ଦେଖା ସମୟରେ ରବୀନ୍ଦ୍ରମଣ୍ଡପ, ଜୟଦେବ ଭବନ ବା ଭଞ୍ଜକଳା ମଣ୍ଡପରେ ।

ମୁଁ ଗଢ଼ିଥିବା ଭିନ୍ନ ଏକ ଅନୁଷ୍ଠାନ "ପରମ୍ପରା"ର ସବୁ ଉତ୍ସବାନୁଷ୍ଠାନରେ ସେ ଉପସ୍ଥିତ ରହୁଥିଲେ ଓ କହୁଥିଲେ- ପ୍ରସନ୍ନ ବାବୁ, ନିଶ୍ଚିତ ଭାବେ ଏହା ଭିନ୍ନ ଏକ ଅନୁଷ୍ଠାନ 'ପରମ୍ପରା' । ଠିକ୍ ସେହିପରି ସେ ପାରମ୍ପରିକ ଲୋକକଳା, ସଂଗୀତ, ନୃତ୍ୟ, ନାଟକର ଲେଖାସବୁକୁ ସବୁବେଳେ ଗୁରୁତ୍ୱ ଦେଇ ଆସୁଥିଲେ । ସମୟକ୍ରମେ ଆମ ସଂପର୍କ ଘରୋଇ ସଂପର୍କରେ ପରିଣତ ହୋଇଗଲା । ସେଇ ଭଲପାଇବା, ଭକ୍ତି କରିବା ଏବଂ ସଂସ୍କାର ସବୁକିଛି ତାଙ୍କ ପରିବାରରେ, ପିଲାମାନଙ୍କ ପାଖରେ ଏପର୍ଯ୍ୟନ୍ତ ରହିଛି ।

ମୁଁ ମୋର ଅନୁଷ୍ଠାନ 'ପରମ୍ପରା'ରେ ତାଙ୍କ ଲିଖିତ କିଛିଟା ନାଟକ କରିଛି । ଦର୍ଶକମାନେ ସେସବୁ ଦେଖି ବହୁତ ପ୍ରଶଂସା କରିଛନ୍ତି । ହଠାତ୍ ନିଜେ ସେ ମତେ କହିଲେ "ପ୍ରସନ୍ନବାବୁ, ଗୋଟେ ନାଟକ ଲେଖିଚି । ତୁମ ଛଡ଼ା ସେ ନାଟକ ଆଉ କାହାକୁ ଦବାକୁ ଇଚ୍ଛା ହେଉନି । ତୁମେ ହିଁ ସେ ନାଟକକୁ ଠିକ୍ ନିର୍ଦ୍ଦେଶନା ଦେଇପାରିବ । ଠିକ୍ ଜଷ୍ଟିସ୍ ଦେଇପାରିବ । ମୁଁ କହିଲି- ଠିକ୍ ଅଛି, ଦିଅ ପଢ଼ିବା, ଡିସ୍‌କସନ୍ କରିବା । ନାଟକଟି ପଢ଼ିବା ପରେ ତାଙ୍କୁ ଫୋନ୍‌ରେ କହିଲି- ବନ୍ଧୁ, ମୋର ତ ଏମିତି ନାଟକଟିଏ ଦରକାର ଥିଲା । ସେ ନାଟକର ନାଁ "ମାଧବ ଦାସର ସୁଆଙ୍ଗ" । ଅତି ସୁନ୍ଦର ନାଟକ ।

ତା' ପରଦିନ ଠିକ୍ ହେଲା ଆମେ ଦୁହେଁ ବସି ନାଟକ ବିଷୟରେ ଡିସ୍‌କସନ୍ କରିବା ପାଇଁ । ଦିନ ଠିକ୍ ହେଇଗଲା ସତ, କିନ୍ତୁ ଠିକ୍ ତା'ର ଘରିଦିନ ପୂର୍ବରୁ ହଠାତ୍ ଖବର ପାଇଲି ସେ ଆଉ ନାହାନ୍ତି । ବିଶ୍ୱାସ କରିପାରିଲିନି । ତାଙ୍କ ଘରେ ଯାଇ ପହଞ୍ଚିଲି । କିନ୍ତୁ ତାଙ୍କ ନାଟକ ବିଷୟରେ ଆଲୋଚନା କରିବା ପାଇଁ ସେ ଆଉ ନଥିଲେ । ନା ମୁଁ ତାଙ୍କୁ କିଛି ପଚାରି ପାରିଲି ନା ସେ ମତେ କିଛି କହିପାରିଲେ । ତାଙ୍କର ଠିକଣା ବଦଳି ଯାଇଥିଲା । ଏତେ ଶୀଘ୍ର ଠିକଣାଟା ବଦଳିଯିବ ବୋଲି ମୁଁ ଭାବିନଥିଲି । ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ସବୁଦିନ ପାଇଁ ଏ ଦୁନିଆଁରୁ ଚାଲିଗଲେ । ତାଙ୍କ ଠିକଣା ବଦଳିଗଲା ।

ମୁଁ ତାଙ୍କର ଠିକଣା ଜାଣିଥିଲେ ବି ଖୋଜୁଚି... ଆଉ ତାଙ୍କୁ ପାଉନି । ହଉ ବନ୍ଧୁ, ତୁମେ ଯେଉଁ ଠିକଣାରେ ଥାଅ, ଖୁସିରେ ଥାଅ । ଶାନ୍ତିରେ ଥାଅ । ପ୍ରଭୁ ଜଗନ୍ନାଥ ତୁମ ଆତ୍ମାକୁ ଶାନ୍ତିରେ ରଖିଥାଆନ୍ତୁ । ଜୟ ଜଗନ୍ନାଥ । ❑



# ସାହିତ୍ୟର ସ୍ୱପ୍ନଦର୍ଶୀ ସୁରେଶ ଭାଇ : ମୋ କବିତା ବହି "ଖାଲେଇ"ରୁ ପୁଣି "ଆଷାଢ଼ କା ଏକ୍‌ଦିନ୍ ଯାଏ ।"

ସୁରେନ୍ଦ୍ର ପାଣିଗ୍ରାହୀ

୨୦୦୪ ମସିହାର କଥା । ସୁରେଶ ଭାଇଙ୍କ ସହ ପରିଚୟ ହୁଏ ପୁସ୍ତକ ମେଳାରେ । ସୁରେଶ ଭାଇ ଆଧୁନିକ ଓଡ଼ିଆ କବିତା ବିଷୟରେ ନିଜର ସ୍ୱଭାବସୁଲଭ ବ୍ୟଙ୍ଗାତ୍ମକ ଶୈଳୀରେ ଜଣେ ସାହିତ୍ୟିକଙ୍କ ସହ ଆଲୋଚନା କରୁଥା'ନ୍ତି । ମୁଁ ପୁସ୍ତକମେଳା ମଞ୍ଚରୁ କବିତା ପଢ଼ି ତଳକୁ ଆସିଲି । କବିତାର ଶୀର୍ଷକ ଥିଲା "ବସନ୍ତ ନାୟକ ଓ ରାତ୍ରିବ୍ୟାଘ୍ର ଉପାଖ୍ୟାନ" । କବିତାଟି ସତ୍ୟନାରାୟଣ ପାଲାରେ ପଢ଼ାଯାଉଥିବା ପୋଥିର ଆଖ୍ୟାନ ଉପରେ ଆଧାରିତ ଥିଲା ଓ ମୋର ୨୦୦୪ରେ ପ୍ରକାଶିତ "କିଆ କେତକୀର କବିତା" ସଂକଳନରେ ସ୍ଥାନିତ ହୋଇଥିଲା । ସୁରେଶ ଭାଇଙ୍କ ସହ ମୋର ପରିଚୟ କବି ଦୁର୍ଗା ଷଡ଼ଙ୍ଗୀ କରାଇଥିଲେ ଓ ଭାଇ ଏହି କବିତାଟିକୁ ବେଶ୍ ଭଲ ବୋଲି କହି ମୋତେ ପ୍ରଶଂସା କଲେ । ପରେ ଜାଣିଲି ସେ ଅପ୍ରିୟ ସତ୍ୟ କୁହନ୍ତି, ଅର୍ଥାତ୍ ଯାହାକୁ ଗାଳିଦେବା କଥା ସାମ୍ନାରେ ଦିଅନ୍ତି ଓ ପ୍ରଶଂସା ବି ମୁହଁ ସାମ୍ନାରେ କରିଥାଆନ୍ତି । ଏହା ତାଙ୍କର ଥିଲା ଜନ୍ମଜାତ ସ୍ୱଭାବ । ସାହିତ୍ୟରେ ଥିଲା ତାଙ୍କର ଅଗାଧ ଜ୍ଞାନ, ତେଣୁ ସେ ଯୁକ୍ତି ବି କରୁଥିଲେ ।

ମୁଁ ବି ସୁରେଶ ଭାଇଙ୍କଠାରୁ ଗାଳି ଖାଇଚି । ସେ ରାଗନ୍ତି ଓ ମୁହଁରେ କହନ୍ତି- "ତୁମେ ସବୁ ଭଦ୍ରିକିଆ ଗୋଟେ ଗ୍ରୁପ୍ ହେଇଚ । ସାହିତ୍ୟରେ ରାଜନୀତି କରୁଚ"   ପୁଣି କିଛି ସମୟ ପରେ ଚା' ପିଇବାକୁ ଡାକିକି କବିତା ଓ ସାହିତ୍ୟର ବିଭିନ୍ନ ଅଙ୍ଗ ଉପରେ ଆଲୋଚନା କରନ୍ତି । କେତେବେଳେ ପିକ୍‌ନିକ୍ କଥା କୁହନ୍ତି ତ ଚିଲିକା ମଝିରେ ଡଙ୍ଗା ଉପରେ କାବ୍ୟ ସଂଧ୍ୟାର ପରିକଳ୍ପନା କରନ୍ତି । ହଠାତ୍ ଦିନେ ପ୍ରସ୍ତାବ ଦେଲେ- ପୁରୁଣା ବସ୍‌ଷ୍ଟାଣ୍ଡ୍ ଚା' ଖଟିରେ ଯେ କଲିକତାରେ ସେ ଦେଖିଥିବା କଫିହାଉସ୍ ପୋଏଟ୍ରି ଭଳି ଭୁବନେଶ୍ୱରରେ ବି ପୁରୁଣା ବସ୍‌ଷ୍ଟାଣ୍ଡରେ "କଫି ହାଉସ୍ କ୍ରିଏଟିଭ୍ କର୍ଣ୍ଣର" ହେବ । ପ୍ରସିଦ୍ଧ କବିମାନେ ଏଇ ବସ୍‌ଷ୍ଟାଣ୍ଡକୁ ଆସି ସେମାନଙ୍କ କନିଷ୍ଠ କବିମାନଙ୍କ ସହ ମିଶି ଗପିବେ, ଚା' ପିଇବେ । ଏଠାରେ କବିତା ପାଠ ହେବ । ଭାବର ଆଦାନପ୍ରଦାନ ହେବ; ତେବେ କବିତା ନିଶ୍ଚୟ କୋଠରୀର ବନ୍ଦ ଅନ୍ଧାରରୁ ମୁକୁଳି ସାଧାରଣ ଲୋକ ପାଖରେ ପହଞ୍ଚିବ । ବହୁତ୍ ବଢ଼ିଆ ପ୍ରସ୍ତାବ ଥିଲା ତ ଆମେ ସମସ୍ତେ ରାଜି ହେଲୁ ।

ଠିକ୍ ଏହି ସମୟରେ ମୋର କବିତା ବହି "ଖାଲେଇ" 'ଟାଇମ୍ ପାସ୍' ପ୍ରକାଶନୀ ଦ୍ୱାରା ପୁସ୍ତକମେଳାରେ (୨୦୦୮) ପ୍ରକାଶିତ ହୋଇଥାଏ । ମୋତେ କହିଲେ "ସୁରେନ୍ଦ୍ର! ତୁମର ଏହି ବହିରୁ "କଫି ହାଉସ୍ କ୍ରିଏଟିଭ୍ କର୍ଣ୍ଣର"ର ପ୍ରଥମ ଅଧିବେଶନ ଆରମ୍ଭ ହେବ ଓ ଏଥିରେ ତୁମ ବହି ଚର୍ଚ୍ଚା ହେବ । ସେଇ ପ୍ରତୀକ୍ଷିତ ସଂଧ୍ୟା ଆସିଲା । ବସ୍‌ଷ୍ଟାଣ୍ଡସ୍ଥିତ ଚା' ଦୋକାନରେ ସମସ୍ତେ ଏକାଠି ହେଇ ଚା' ପିଇଲୁ ଓ ମୋ ବହି ଉପରେ ଉପସ୍ଥିତ ସମସ୍ତ କବି ନିଜର ମତାମତ ରଖିଲେ । ବହୁତ ଭଲଲାଗିଲା । ଏଇଭଳି ବିଭିନ୍ନ ବହି ଉପରେ "ଚା'ରେ ଚର୍ଚ୍ଚା' ଭଳି କାର୍ଯ୍ୟକ୍ରମ ସବୁ ଚାଲିଲା । ବରିଷ୍ଠ କବିମାନେ ସେଠାକୁ ଆସିଲେ ଓ ଖବରକାଗଜ, ଟିଭିରେ ଏହାର ବେଶ୍ ପ୍ରଚାର ମଧ୍ୟ ହେଲା । ନିଜ ହାତରୁ ପଇସା ଖର୍ଚ୍ଚ କରି ସୁରେଶ ଭାଇ ଦରି ଓ ଚେୟାର କିଣିଥିଲେ । ନିଜ ସ୍କୁଟିରେ ଦରି ବୋହି ଆଣୁଥିଲେ । ସମୟ ଅସମୟେ ଆସରକୁ ଯିଏ ନ ଆସିଲା ତାକୁ ଗାଳି ଶୁଣିବାକୁ ପଡୁଥିଲା । ପ୍ରକୃତରେ ପିକ୍‌ନିକ୍ ହେଉ କି ସାହିତ୍ୟ କାର୍ଯ୍ୟକ୍ରମ ସେ ଥିଲେ ଜଣେ ସୁନ୍ଦର ସଂଗଠକ, ଦକ୍ଷ ପରିଚାଳକ ।

ନିଜେ ଘରେ 'କଣ୍ଢେଇ ଘର' ଓ ବିଭିନ୍ନ ଚିତ୍ରକଳା ତିଆରି କରି ରଖିଥିଲେ । ଆମକୁ ସେସବୁ ଦେଖାଇ ବେଶ୍ ଖୁସି ହେଉଥିଲେ । ଚଉଷଠୀ ଯୋଗିନୀଙ୍କ ଉପରେ ତାଙ୍କର ଇଂରାଜୀ ବହି ବେଶ୍ ଲୋକପ୍ରିୟ ପୁସ୍ତକର ମାନ୍ୟତା ପାଇଥିଲା । କଲିକତା ପୁସ୍ତକମେଳା ଯିବା, ବାଂଲାଦେଶରେ ପ୍ରସିଦ୍ଧ ପୁସ୍ତକ 'ମାଆ' ଉପନ୍ୟାସକୁ ଓଡ଼ିଆରେ ଅନୁବାଦ କରିବା ସାଂଗକୁ ଗପ ଓ କବିତା ଲେଖିବା ତାଙ୍କର ପେଷା ଥିଲା ।

ନାଟକ ଲେଖିବା ଓ ଆୟୋଜନ କରିବା ଥିଲା ତାଙ୍କର ଅନ୍ୟ ଏକ ସୁନ୍ଦର ପ୍ରୟାସ । ମୋତେ ପ୍ରସିଦ୍ଧ ହିନ୍ଦୀ ନାଟ୍ୟକାର ମୋହନ ରାକେଶଙ୍କର ପ୍ରସିଦ୍ଧ ନାଟକ "ଆଷାଢ଼ କା ଏକ୍ ଦିନ"ର ଅନୁବାଦ ଶୁଣାଇଥିଲେ । ଏହାକୁ ମଂଚନ କରାଇ ସେ ବେଶ୍ ଆନନ୍ଦିତ ଥିଲେ । ମୃତ୍ୟୁର ବର୍ଷେ ପୂର୍ବରୁ ଗୀତି କବିତା ଲେଖୁଥିଲେ ଓ ବସ୍‌ଷ୍ଟାଣ୍ଡରେ ଘ' ଖଟିରେ ଆମକୁ ଶୁଣାଇ ଖୁବ୍ ଖୁସି ହେଉଥିଲେ । ମୁଁ ହିନ୍ଦୀ ସାହିତ୍ୟର ଛାତ୍ର ଥିବାରୁ ହିନ୍ଦୀ ସାହିତ୍ୟର ବହୁ ସାହିତ୍ୟିକମାନଙ୍କ ବିଷୟରେ ମୋ ସହ ଆଲୋଚନା କରୁଥିଲେ ।

ସୁରେଶ ଭାଇ ଏତେ ଶୀଘ୍ର ଚାଲିଯିବେ ସତରେ ବୋଲି ବିଶ୍ୱାସ ହେଉନି ଆଜି ବି । ସ୍ୱପ୍ନଦର୍ଶୀ ସାହିତ୍ୟିକଙ୍କର "ଚିଲିକାରେ କାବ୍ୟ ସଂଧ୍ୟା" ପ୍ରୋଗ୍ରାମ୍ ଅଧୁରା ରହିଗଲା... ଅଧୁରା ରହିଗଲା ତାଙ୍କର ଗୀତିକବିତା ପୁସ୍ତକର ପ୍ରକାଶନ... ବସ୍‌ଷ୍ଟାଣ୍ଡ୍ ସାହିତ୍ୟ ଖଟିରେ ଛିଡ଼ାହେଇ ପ୍ରାଚୀନ ଓ ଆଧୁନିକ କବିମାନଙ୍କର କାବ୍ୟ କବିତାର ଅନର୍ଗଳ ଗାୟକ ସାହିତ୍ୟିକ ସୁରେଶ ଭାଇ ଆଜି ଆକାଶର ଅପହଞ୍ଚ ଇଲାକାରେ... କିନ୍ତୁ ଆଜି ଆମେ ତାଙ୍କୁ ବସ୍‌ଷ୍ଟାଣ୍ଡରେ ଖୋଜୁ... କବିତା ଶୁଣିବା ପାଇଁ ଆଉ ସ୍ନେହମିଶା ଗାଳି ଖାଇବା ପାଇଁ... 'ଖାଳେଇ'ରୁ ପୁଣି 'ଆଷାଢ଼ କା ଏକ୍ ଦିନ୍'ର ନାୟକ କାଳିଦାସ ଯାଏ ସମସ୍ତେ ଚାହିଁ ରହିଛନ୍ତି ସୁରେଶ ଭାଇଙ୍କର ଫେରନ୍ତି ରାସ୍ତାକୁ... ପ୍ରଣାମ ଭାଇ !


ରାଜଭାଷା ଅଧିକାରୀ
ଆଲୋକ ଭାରତୀ ଟାୱାର୍ସ, ଶହୀଦନଗର
ଭୁବନେଶ୍ୱର-୭୫୧୦୦୭
ମୋବାଇଲ୍ - ୯୪୩୭୨୮୨୯୮୪






# ସୁରେଶ ବଳବନ୍ତରାୟ
# ଗୋଟେ ଅସରନ୍ତି ଜୀବନର ସୁରଭିତ ଫୁଲ

ଦୁର୍ଗା ଷଡ଼ଙ୍ଗୀ

କେତେ ଆନନ୍ଦ, ନିରାନନ୍ଦର ବୋହୂଚୋରି ଖେଳରେ ବିତିଗଲା ଜୀବନର ମହାର୍ଘ ଦିନ ସବୁ ! ରୋମାଞ୍ଚ-ଅଭୀପ୍ସା, ଅତିନ୍ଦ୍ର ନ ଥାଇ ଜୀବନ କ'ଣ ଜୀବନ ପରି ଲାଗେ କି ? ଜୀବନ ତ ଚିରକାଳ ଅର୍ଥପୂର୍ଣ୍ଣ ଏକ ଜିଜ୍ଞାସା - ଭାବବିଭୋର-ଖୋଜାଲୋଡ଼ାର ଅଥଳଅଳ ସମୁଦ୍ର ହେଲେ ଭାବ ନଥିଲେ ଜୀବନ ଚରିତ୍ରର ଝରାପତ୍ର- କେବଳ ମର୍ମର ଧ୍ୱନିର ଏକ ଉଦାସ ଅପରାହ୍ଣ । ମାୟାର ପୃଥିବୀରେ କେତେ ମୋର ମୋର କହି ଗୀତ ବୋଲିବ ବିଚରା ମଣିଷ! ଯେତେ ନିଜ ପାଇଁ ଲୋଡ଼ିବ ସେତେ ଦହଗଂଜ ହେବ ଜୀବନ । ତାନ୍‌ପୁରାର ରାଗିଣୀ ପରି ଜୀବନଟି ସଦା ବ୍ୟାକୁଳ ହେଉଥିବା ଗୋଟେ ସୁଗମ ସଙ୍ଗୀତ, ଯାହାର ଧ୍ୱନି-ଲାଳିତ୍ୟ, ଛନ୍ଦବିଭୋରତା ମଣିଷକୁ ଏକ ସୁଖଦ ନୀଳ ତରଙ୍ଗ ଭିତରେ ମୂର୍ତ୍ତିମନ୍ତ କରେ, ତାହା ତ ସାହିତ୍ୟ । ସଖ୍ୟପଣରେ ଜୀବନ ଲୋଡ଼ିବା, ଅନ୍ତଃକରଣରେ ମାନବୀୟ ମୂଲ୍ୟବୋଧକୁ ଉଚ୍ଚାଟ କରିବା ହିଁ ସାହିତ୍ୟ । ଅର୍ଥ-ପ୍ରତିପତ୍ତି-କ୍ଷମତା-ଅହଂକାର-ଛନ୍ଦ ଛଦ୍ମର ଆଟୋପ ଭିତରେ ଜୀବନ କେଉଁଆଡ଼େ ହଜିଯାଏ ମଣିଷର । ଯେତେବେଳେ ସେ ପରିଣତ ବୟସର ଥୁଣ୍ଟା ଗଛଟିଏ ହୋଇଯାଏ ସେତେବେଳେ ଜୀବନ କାହିଁ ବୋଲି ହକାରି ବସିଲେ କେହି ଶୁଣନ୍ତିନି! ଶୁଣେ କେବଳ ପ୍ରତିଧ୍ୱନି । ସେଇଥିପାଇଁ ତ ସନ୍ଥଗଣ କହନ୍ତି- ମଣିଷ ବିରାଗର ସ୍ୱାମୀ, ମାୟାର ଦାସ ।

ସେଇ ମାୟାର ପ୍ରହେଳିକାମୟ ନୀଳ ଭଉଁରୀ ଭିତରୁ ଉଧୁରିଯାଏ କିଞ୍ଚିତ୍ ପରିମାଣରେ ଜଣେ ଜୀବନସ୍ନେହୀ ସ୍ରଷ୍ଟା । ସେ ହେଉ ଲେଖକ, ଚିତ୍ରକର, ସଂଗୀତକାର କି ନୃତ୍ୟାଙ୍ଗନା । ଜୀବନକୁ ସେ ହିଁ ଭଲଭାବରେ ବୁଝେ, ପରଖେ, ସ୍ନେହ ଦିଏ, ସ୍ନେହ ବି ନିଏ ।

ସେଭଳି ଜଣେ ପ୍ରଜ୍ଞା ପୁରୁଷ ଥିଲେ ମୋ ସମଧର୍ମ କବି-ପ୍ରାବନ୍ଧିକ-ନାଟ୍ୟକାର-ଐତିହାସିକ-ସମାଲୋଚକ, ଅନୁଜପ୍ରତିମ ସୁରେଶ ବଳବନ୍ତରାୟ । ସାଙ୍ଗିଆ ଥିଲା ସିନା 'ବଳବନ୍ତ' ହେଲେ ସେ ଥିଲେ ଏକାଧାରରେ ଜଣେ ଚିରସ୍ରୋତା- କୂଳ ଛୁଉଁଥିବା- କଳରବରେ ଉଛୁଳି ଉଠୁଥିବା ଗୋଟେ ସଜଳ-ଶୀତଳ ନଈ । ଯାହାର ଶରୀରରେ ବଳ ନଥିଲା, ଥିଲା ଛଳ ଛଳ କରୁଣା ଓ ବିଭୋରତାର ମୃଦୁମନ୍ଦ ସମୀରଣରେ ଚିତ୍ତ ଚହଲି ଯାଉଥିବା ଆତ୍ମୀୟତାର ଛାଇ । 'ସୁରେଶ' - ସାର୍ଥକ ନାମ ବହନ କରିଥିବା ସେ ମଣିଷଟି କ'ଣ ନଥିଲା ସତେ! ବିବିଧରେ ବିବିଧତା ସେ । ମୁଖର ଓଷ୍ଠାଧାରରେ ଥିଲା ବ୍ୟଞ୍ଜନା, ହେଲେ ଅନ୍ତଃକରଣରେ ପ୍ରେମର ବହମାନ ଧାରା, ଯାହାକି କ୍ଷଣିକରେ ଦୁଃଖୀମଣିଷଟିର ଚିତ୍ତ ଚହଲାଇ ଦେବାରେ ସାର୍ଥକତା 'ଆଣି ଦେଉଥିଲା । ଅଜସ୍ର ଶ୍ରମ, ଦୁର୍ବାର ସଂକଳ୍ପ ଥିଲା ସେ ମଣିଷଟିର ଓଡ଼ିଆ ଭାଷା-ସାହିତ୍ୟ ପାଇଁ । ପ୍ରଶାସନିକ ଜୀବନ ନେଇ ଜୀବିକା ନିର୍ବାହ କରୁଥିବା ମଣିଷଟି ଅବଶିଷ୍ଟ ଦିନର ଅଠର ଘଣ୍ଟା ବିତାଇ ଦେଉଥିଲା ସାହିତ୍ୟ-ସଂସ୍କୃତି ପାଇଁ ବିଭୋର ମାନସିକତାରେ । ଏହା କ'ଣ ଆଉ କାହା ପାଇଁ ସହଜ କି ?

ଅପ୍ରତିମ ଗୁରୁଗମ୍ଭୀର ସୁରେଶ ଭାଇର ସ୍ୱର । ଆଜକୁ ଠିକ୍ ୧୫ ବର୍ଷ ତଳେ ତାଙ୍କ ସହ ଆକସ୍ମିକ ଦେଖାହୁଏ, ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡରେ କଦବା-କେମିତି । ବୃତ୍ତି ମୋର କଟକରେ, ଜୀବନ ଜିଏଁ ଚନ୍ଦ୍ରଶେଖରପୁରରେ । ସମୟର ଘୋର ଅଭାବ । ସାଙ୍ଗସାଥୀ ସଭାସମିତି ସୀମିତ । କ'ଣ ହୋ ଦୁର୍ଗାବାବୁ- 'ସମାଜ', ଖବର କ'ଣ, କାଗଜକୁ ଧରି ବା କରିବ କ'ଣ ? କବିଟିଏ ପରା, ଦରଦୀ-ଛଳଛଳ କବିତାରେ ବୁଡ଼ିରୁହ, ସେଇତ ତମର ଜୀବନ ।' ବୟସରେ ସାନ ହେଲେ ଆକଟପଣରେ ଅନୁପମ-ଅଗ୍ରଜ, ଯେମିତି ମୋ ସହୋଦର ବଡ଼ଭାଇ । ବହୁତ ସମୟ ଚର୍ଚ୍ଚା ଚାଲେ ବେଳ ଅବେଳରେ ।

ମୋ କବିତାର ସେ ଥିଲେ ମୁଗ୍ଧ ପ୍ରଶଂସକ । ପୁଣି ଯେହେତୁ ମୋ ବାପା ସ୍ୱର୍ଗତ ଧ୍ରୁବଚରଣ ଷଡ଼ଙ୍ଗୀ, ଗାୟକଭୂଷଣ, ଗାୟକ ଚୂଡ଼ାମଣି, ଓଡ଼ିଶାର ଜଣେ ଆଗଧାଡ଼ିର ଦିଗ୍‌ଗଜ 'ପାଲାଗାୟକ' ଥିଲେ : ସେ କଥା ଜାଣିଲା ପରେ ମତେ ଧିକ୍କାରିଲେ, ହଇଓ ଭାଇନା- ତମେ ଏଡ଼େ ବଡ଼ଲୋକ ଗୁଣୀଙ୍କର ପୁଅ ହୋଇ ପାଲାଗାୟକଟିଏ କାହିଁକି ହେଲନି ! ! ଆହାଃ କି ଦୁଃଖ କଥା ଇଏ... ଏମିତି ବହୁତ କିଛି । ସୁରେଶ ଯେ ଏକାଧାରରେ ଗାୟକ, ବାୟକ, ଐତିହାସିକ, ପ୍ରତ୍ନତତ୍ତ୍ୱବିତ୍, କବି, ଗାଳ୍ପିକ, ନାଟ୍ୟକାର । ତାଙ୍କ ଘରକୁ ଯାଇଛି, ଆତିଥ୍ୟ ପାଇଛି । ବନ୍ଧୁ ସଙ୍ଖୋଳିବାରେ ସେ ସର୍ବମାନ୍ୟ, ସାହସ ଦେବାରେ ଅପ୍ରତିମ ଆଉ ବନ୍ଧୁ ହେବାରେ ଅନୁପମ । କେବଳ ତମର ଅହଂକାର ନଥିଲେ ହେଲା ।

ମନେଅଛି, ବହୁ ବନ୍ଧୁଙ୍କ ଗହଣରେ ବାରଙ୍ଗ ଆମ ଗାଁ ପାଖ ଚୂଡ଼ଙ୍ଗଗଡ଼ରେ ମାଂସଭୋଜି । ମନେଅଛି, ଧଉଳି ତଳେ ହୋଇଥିବା ବନ୍ଧୁମେଳର ଭୋଜି । ସବୁଥିରେ ସେ ଆଗୁଆ-ଛାମୁଆ ନେତା । ଜୀବନକାଳ ଭିତରେ ଏମିତି ଖୋଲାମେଲାର ସାହିତ୍ୟିକ ମଣିଷଟିଏ ଆଉ ଏ ଆଖି ଏଯାବତ୍ ଦେଖିଲାନି- ସୁରେଶ ଭାଇ ଭଳି । କି ଉଦାର ! କି ମୁହଁଖର ! ପୁଣି କି ହୃଦୟବତ୍ସଳ ଛଳଛଳ ଅନୁରାଗୀ ମଣିଷ ସେ ! ଆହା ଆଜି ଥାଆନ୍ତେ କି ସେ... ବଳ ଥା'ନ୍ତା ଦେହରେ- ଆନନ୍ଦ ଥା'ନ୍ତା ମନରେ-ଉଦ୍ଦାମତା ଥା'ନ୍ତା ସାହିତ୍ୟ ସାଧନାରେ ! ହେଲେ ବିଧି ନିଷ୍ଠୁର । କଞ୍ଚା ନେଇ ଯାଏ- ପାଚିଲାକୁ ଗଛରେ ଝୁଲେଇଥାଏ । କେତେ ଭୋଜିଭାତ ତାଙ୍କ ପରିବାରର- ପିଲା ଛୁଆଙ୍କ ବାହାଘର- ସବୁ ଅଧୁରା ରହିଗଲା ପଥ । ଏଇ ଦୁର୍ଗା ଭାଇ ଆଙ୍କିବା, ବୁଧବାର ଦିନ ତମ ଗାଁକୁ ଯିବା- ଉମାନାନୀକୁ ଦେଖିବା । ତା' ଚିତ୍ର ଆଉ ତମ ଗାଁ ଘରେ ବାରଙ୍ଗରୁ ମାଂସ ଆଣି ରୋଷେଇ କରିବ- ଖାଇବା ! କଥା କିନ୍ତୁ କଥାରେ ରହିଗଲା । ଦୁଇଦିନ ଆଗରୁ ସେ ଚାଲିଗଲେ, ଅକସ୍ମାତ୍ ଆମକୁ ନ କହି, ତାଙ୍କ ପିଲାଛୁଆଙ୍କୁ ନ ଜଣେଇ । ଏଇତ ଭଲ ମଣିଷର ସ୍ୱାର୍ଥପରତା ! କାହାକୁ ନ କହି ଆକାଶରେ ତାରା ହୋଇଯିବା ପାଇଁ ଟିକେଟ୍ କାଟିବା କଥା ! !

ସେ ଭାଉଜ ଆଖିରୁ କ'ଣ ଲୁହ ଶୁଖୁଥିବ ? କେଜାଣି ! ! ଟିକି ଝିଅ ଅନ୍ୟା ଅନୁରୂପା କ'ଣ ରାତିର ଆକାଶକୁ ଚାହିଁ ତାରାଙ୍କ ମେଳରେ ତା' ବାପାକୁ ଖୋଜୁଥିବ ! ! ପୁଅ ଦୁଇଜଣ କ'ଣ ନିଜ ପଛରେ 'ବାପା'ର ଛାଇ ଦେଖି ଅନ୍ୟମନସ୍କ ହୋଇଯାଉନଥିବେ ! !

ବିଧାତା କରନ୍ତୁ ସେମାନେ ଭଲରେ ତାଙ୍କ ଆଦର୍ଶ ଓ ଅନୁଶାସନରେ ଥାଆନ୍ତୁ । ସେମାନଙ୍କୁ ସେଇ ଗୋଟିଏ ହିଁ ସାରକଥା ଯେ- 'ଯାହା ବାପ ଚଢ଼େ ଘୋଡ଼ା....' ❑





# ସୁରେଶ ଭାଇ

## ପରେଶ କୁମାର ପଟ୍ଟନାୟକ

ସୁରେଶ ଭାଇଙ୍କୁ ମୁଁ ଜାଣିଥିଲି ଅନେକ ଦିନ ଆଗରୁ, ତାଙ୍କ ସହିତ ଦେଖାହେବା ପୂର୍ବରୁ । ମୁଁ ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟର ଛାତ୍ର ଥିବାବେଳେ ଏକନମ୍ବର ହଷ୍ଟେଲରେ ରହୁଥିଲି । ଦ୍ୱିତୀୟବର୍ଷରେ ମୁଁ ପାଇଲି ଗୋଟାଏ ଡବଲ୍ ରୁମ୍ । ରୁମ୍ ନମ୍ବର ଚଉତିରିଶି ବୋଧହୁଏ । ପାଖ ରୁମ୍‌ଟା ଥିଲା ପଞ୍ଚତିରିଶ ଓ ସେଇ ରୁମ୍‌ର କବାଟରେ କଳାରଙ୍ଗର ଅକ୍ଷରରେ ଲେଖା ହୋଇଥିଲା **ସୁରେଶ ବଳବନ୍ତରାୟ, ଆର୍ଟିଷ୍ଟ** । ପ୍ରଥମରୁ ହିଁ ସେ ଲେଖାର ଡିଜାଇନ୍ ମୋତେ ଆକର୍ଷଣୀୟ ମନେହୋଇଥିଲା । ମୁଁ ଅନୁସନ୍ଧାନ କଲି ଓ ଜାଣିଲି ସେଇ ରୁମ୍‌ରେ ରହୁଥିଲେ ଜଣେ ଆର୍ଟିଷ୍ଟ, ଛାତ୍ର ମଧ୍ୟ ଓ ସେ ଏବେ ପାସ୍ କରି ଚାଲିଗଲେଣି । ରୁମ୍ ଭିତରେ ପଶିଲି ଓ ଦେଖିଲି କାନ୍ଥରେ ଗୋଟାଏ ବିରାଟ ଚିତ୍ର: ଯିଶୁଖ୍ରୀଷ୍ଟଙ୍କ ଛବି । ଆକାଶକୁ ଚାହିଁ ଶାନ୍ତମୁଦ୍ରାରେ ଠିଆ ହୋଇଛନ୍ତି ଯିଶୁଖ୍ରୀଷ୍ଟ । ଚିତ୍ରଟା ଏବେ ବି ମନେ ଅଛି ମୋର । ସୁରେଶ ବଳବନ୍ତରାୟଙ୍କୁ ଖୋଜିବା ସେଇଠୁ ଆରମ୍ଭ । ପରେ ବିଭିନ୍ନ ପତ୍ରପତ୍ରିକାରେ ତାଙ୍କ ଲେଖା ପଢ଼ିଲି ଓ ତାଙ୍କ ଠିକଣା ଦେଖି ଜାଣିଲି ଯେ ସେ ଥେରୁବାଲିରେ ଅବସ୍ଥାପିତ । ଦିନେ ପାଇଲି ତାଙ୍କର ଗୋଟିଏ ବହି 'ବାଲିରେଣୁ ମହାବନ୍ଧ' । ପଢ଼ିଲି ଓ ମନେ ମନେ ଖୋଜିଲି ସୁରେଶ ବଳବନ୍ତରାୟଙ୍କୁ ।

ଦେଖାହେଲା ଯେବେ ସେ ଭୁବନେଶ୍ୱର ଫେରିଆସି କଷ୍ଟମ୍‌ସ ଓ ସେଣ୍ଟ୍ରାଲ ଏକ୍‌ସାଇଜ୍‌ର ଅଫିସ୍‌ରେ କାର୍ଯ୍ୟରତ ଅଛନ୍ତି । ଭାଗ୍ୟକୁ ମୋର ବଡ଼ଭାଇ ପୀୟୁଷ କୁମାର ପଟ୍ଟନାୟକ ସେଣ୍ଟ୍ରାଲ ଏକ୍‌ସାଇଜର କମିଶନର ଭାବରେ ଯୋଗ ଦେଇଥାଆନ୍ତି । ଡିପାର୍ଟମେଣ୍ଟର ଲାଇବ୍ରେରୀ ପାଇଁ ବହି କିଣିବାକୁ ହେବ । ସେଇ ଦଳରେ ମୁଁ ସାମିଲ୍ ହୋଇଥିଲି ମୋର ବହିପ୍ରୀତି ତଥା ବଡ଼ଭାଇଙ୍କ ପ୍ରଭାବରୁ । ସେଇ ଦଳରେ ଥିଲେ ସୁରେଶ ବଳବନ୍ତରାୟ, ଯାହାଙ୍କୁ ମୁଁ ଅନେକ ବର୍ଷ ଧରି ମନେ ମନେ ଖୋଜୁଥିଲି । ଆମେ ସାଙ୍ଗ ହୋଇ କଟକ ଯାଇଥିଲୁ ଓ ବହି ସବୁ ସିଲେକ୍ଟ କରିଥିଲୁ, ବିନୋଦବିହାରୀ ପ୍ରକାଶକଙ୍କ ନିକଟରୁ ଓ ଢ଼େର ଗପିଥିଲୁ । ସେଇଠୁ ସଂପର୍କଟା ଆରମ୍ଭ ଓ କ୍ରମେ ଘନିଷ୍ଠ । ଯା ପରେ ବିଭିନ୍ନ ସଭାସମିତିରେ ଦେଖା, କଥାବାର୍ତ୍ତା ଓ ଅନ୍ତରଙ୍ଗତା । ମୁଁ ସୁରେଶ ଭାଇଙ୍କ ଘରକୁ ଯାଇଛି, ତାଙ୍କ କଣ୍ଢେଇ ଘର ଦେଖିଛି ଓ ତାଙ୍କ ବହୁମୁଖୀ ପ୍ରତିଭାରେ ମୁଗ୍ଧ ହୋଇଛି । ଲୋକ ଗୋଟାଏ କିନ୍ତୁ ପ୍ରତିଭା ବିବିଧ । ଚିତ୍ର ଆଙ୍କନ୍ତି, ଗପ ଲେଖନ୍ତି, ଅନୁବାଦ କରନ୍ତି, ଗବେଷଣା କରନ୍ତି, ସଂଗଠନ କରନ୍ତି । ନାଟକ କରନ୍ତି ।

ମୋର ମନେହୁଏ, ସେ ମୋତେ ଖୁବ୍ ଭଲପାଆନ୍ତି । କାରଣ ମୋର ସାହିତ୍ୟିକ କାର୍ଯ୍ୟକଳାପର ଉନ୍ମେଷ ପାଇଁ ସେ ମତେ ବହୁତ ପରିମାଣରେ ଉତ୍ସାହିତ କରିଛନ୍ତି । ବହୁତ ସ୍ଥାନରେ ମୋତେ ଏତେ ସ୍ନେହ ଓ ସମ୍ମାନ ଦେଇ ବାନ୍ଧିପକେଇଛନ୍ତି ଯେ ମୋର ବାରମ୍ବାର ମନେହୋଇଛି ସୁରେଶ ଭାଇଙ୍କ ଭଳି ବନ୍ଧୁ ଓ ଶୁଭେଚ୍ଛୁ ଏଇ ସଂସାରରେ ଭରି ହୋଇଯାଆନ୍ତୁ । ଏ ସଂସାର ଆହୁରି ଭଲ ଲାଗୁ ।

ତାଙ୍କ ଅଫିସ୍‌ରେ ପହଞ୍ଚିଗଲେ ସେ ହାତଧରି ଟାଣି ନିଅନ୍ତି ତାଙ୍କ ସିଟ୍ ପାଖକୁ । ତାଙ୍କ ସିଟ୍‌ର କାନ୍ଥରେ ବି ଅନେକ ପେଣ୍ଟିଂ ଥୁଆ ହୋଇଥାଏ । ସେସବୁ ଦେଖି ଚମତ୍କୃତ ହେବାକୁ ପଡ଼େ । ମନରେ ମୋର ସନ୍ଦେହ ଆସେ ମୁଁ ପଚାରେ– ସୁରେଶ ଭାଇ ! ତୁମେ ଅଫିସ୍ କାମ କରନି କି ? ଅଫିସର ସିଟ୍ ପାଖରେ ଏତେ ସବୁ ଚିତ୍ର ଓ ଚିତ୍ର ସରଞ୍ଜାମ ଯେ !

ସୁରେଶ ଭାଇ ମନଖୋଲା ହସ ହସି କହନ୍ତି ସବୁ କାମ ଏକା ସାଙ୍ଗରେ ଚାଲିଛି । ତାଙ୍କର ଚିତ୍ର ପ୍ରଦର୍ଶନୀ ଆୟୋଜିତ ହୋଇଥିଲା ମଡ଼ର୍ଣ୍ଣ ଆର୍ଟ ଗ୍ୟାଲେରୀରେ । ଦେଖିବାକୁ ଯାଇଥିଲି । ସୁରେଶ ଭାଇ ଜବରଦସ୍ତ ମୋତେ ରୋକିଲେ ନ ଖାଇକି ଯିବ ନାହିଁ ।

ଚଉଷଠୀ ଯୋଗିନୀ ମନ୍ଦିରରେ ସେ ଥରେ ଗୋଟେ ଭୋଜିର ଆୟୋଜନ କରିଥିଲେ । ସେ ଭୋଜିକୁ ମୁଁ ଯାଇଥିଲି ସପରିବାର । ସେଠି ତାଙ୍କର ସ୍ନେହ ଓ ଆନ୍ତରିକତାରେ ମୁଁ ନିଜକୁ ଗର୍ବିତ ମନେ କରିଥିଲି । କାରଣ ନିମନ୍ତ୍ରିତ ହୋଇ ଆସିଥିଲେ ଖୁବ୍ କମ୍ ଲୋକ ଓ ମୁଁ ଭାଗ୍ୟବାନ ଯେ ସେଇ ସୀମିତ ନିମନ୍ତ୍ରିତଙ୍କ ଗହଣରେ ମୁଁ ଥିଲି । ସୁରେଶ ଭାଇ ସବୁବେଳେ କହୁଥିଲେ- ଆଉ ଥରେ ଭୋଜି ହେବ, ପୁଣି ମଜା କରିବା ।

ସବୁବେଳେ ପ୍ରାଣୋଚ୍ଛଳ, ସବୁବେଳେ ଦେଖାହେଲେ ନୂଆ ନୂଆ ଯୋଜନାର ନକ୍ସା, ବହି କେମିତି ବାହାରିବ । ଅନୁବାଦ କେମିତି ହେବ ମୋର ଲେଖାସବୁର, ଏମିତି ଅନେକ ପ୍ରୋତ୍ସାହନର କଥା ଶୁଣାଉଥିଲେ ସୁରେଶ ଭାଇ ଓ ମୋ ଭଳି ଅଯୋଗ୍ୟ, ଅଧମ ଲେଖକ ପାଇଁ ତାହା ଥିଲା ଅମୃତବାଣୀ ସଦୃଶ । ଏମିତିକି ମୋର ଯେ ଗୋଟେ ଦୁଇଟା ଟେଲିଭିଜନ ସାକ୍ଷାତ୍କାର ପ୍ରସ୍ତୁତ ହୋଇଥିଲା, ତାହା ମଧ୍ୟ ତାଙ୍କ ସୌଜନ୍ୟରୁ । ସୁରେଶ ଭାଇ କେବଳ ମୋ ପାଇଁ ଲେଖକ ବନ୍ଧୁ ନଥିଲେ, ଥିଲେ ଜଣେ ପ୍ରମୋଟର । ମୁଁ ଯେ ସାହିତ୍ୟରାଜ୍ୟରେ ତିଷ୍ଠି ରହିଛି, ମୋର ପୋଡ଼ାମୁହଁ, ପଛଧାଡ଼ିଆ ଚରିତ୍ର ସତ୍ତ୍ୱେ, ତାହା କେତେଜଣ ପ୍ରମୋଟର ବନ୍ଧୁଙ୍କ ଦ୍ୱାରା ହିଁ ସମ୍ଭବ ହୋଇପାରିଛି । ସୁରେଶ ଭାଇ ତାଙ୍କ ଭିତରୁ ଜଣେ ବୋଲି ସ୍ୱୀକାର କରିବାରେ ମୋର ଦ୍ୱିଧା ନାହିଁ ।

ଅନେକ ସ୍ୱପ୍ନ ଥିଲା, ଅନେକ ଯୋଜନା ଥିଲା, ଅନେକ କାର୍ଯ୍ୟକ୍ରମର ନକ୍ସା ପ୍ରସ୍ତୁତ ହୋଇ ରହିଥିଲା । କଥା ଥିଲା, ସେ ମୋତେ କଲିକତା ବହିମେଳାକୁ ବୁଲାଇ ନେବେ । କଥା ଥିଲା, ସେ ମୋତେ ଥରେ ଧେଉବାଲି ବୁଲେଇନେବେ, ଯୋଉଠି ସେ ତାଙ୍କ ଆଦ୍ୟ ଚାକିରୀ ଜୀବନ କଟାଇଥିଲେ । କିନ୍ତୁ ସବୁ ଯୋଜନା ଅଧା ରହିଗଲା । ହଠାତ୍ ଦିନେ ଶୁଣିଲି, ବାଥ୍‌ରୁମ୍‌ରେ ପଡ଼ିଯାଇ ସୁରେଶ ଭାଇ ଗୁରୁତର ଓ ଡାକ୍ତରଖାନାରେ ଭର୍ତ୍ତି ହୋଇଛନ୍ତି । ଡାକ୍ତରଖାନାରୁ ସେ ଆଉ ଜୀବନ ନେଇ ଫେରି ଆସିପାରିଲେ ନାହିଁ । ଭାଙ୍ଗିଗଲା ଆସର । ବସ୍‌ଷ୍ଟାଣ୍ଡର ମିଳନୀ କ୍ଷେତ୍ର ସୁରେଶହୀନ ହୋଇଗଲା । ତାଙ୍କୁ ଜାଣିଥିବା, ଚିହ୍ନିଥିବା ଲୋକମାନଙ୍କ ଭିତରେ ବନ୍ଧୁତାର ଗୋଟେ ଶୂନ୍ୟସ୍ଥାନ ରହିଗଲା । ମୋ ମନରେ ବି ସେମିତି ଗୋଟେ ଶୂନ୍ୟସ୍ଥାନ ରହିଯାଇଛି । ରହିଯିବ ମଧ୍ୟ ସବୁଦିନକୁ । କାରଣ ସୁରେଶ ଭାଇଙ୍କ ଭଳି ବହୁମୁଖୀ ପ୍ରତିଭାଟିଏ ଆଉ ମିଳିବ ନାହିଁ । ଦରଦୀ ବନ୍ଧୁଟିଏ ମଧ୍ୟ ମିଳିବ ନାହିଁ । ଏତେ ସ୍ନେହପୂର୍ଣ୍ଣ, ଉତ୍ସାହପ୍ରଦ କଥା ମଧ୍ୟ ଶୁଣେଇବାକୁ କେହି ନାହିଁ ।

ପଛକୁ ଫେରିଚାହିଁଲେ ଦିଶେ ତାଙ୍କର ଲମ୍ବା ଚେହେରା, ବୟସର ସ୍ପର୍ଶ ନାହିଁ, ଚିର ଯୁବକ ଭଳି ଉତ୍‌ଫୁଲ୍ଲିତ କଥାବାର୍ତ୍ତା, ଯୋଜନା ପରେ ଯୋଜନା । ମନେପଡୁଛି ଥରେ ଖଦୀମେଳାରେ ଦେଖା ହୋଇଗଲା । ସାଙ୍ଗରେ ଥାଆନ୍ତି ଭାଉଜ । ସୁରେଶ ଭାଇ ପିନ୍ଧିଥାଆନ୍ତି ଗୋଟାଏ କଳାରଙ୍ଗର ଜ୍ୟାକେଟ୍ । ମୋର ସେ ଜ୍ୟାକେଟ୍‌କୁ ଦେଖି ମନ ଖୁସି ହୋଇଗଲା । ପଚାରିଲି- ଭାଇ ! କୋଉଠୁ ଆଣିଲେ ଏ ଜ୍ୟାକେଟ୍ ? ଖୁବ୍ ଚମତ୍କାର ହୋଇଚି । ସେ କହିଲେ, ସଂଗେ ସଂଗେ, ଆତ୍ମୀୟତାର ସହ "ମୁଁ ଆପଣଙ୍କ ପାଇଁ ଆଣିଦେବି !" ମୁଁ କହିଲି, "ମୋତେ କୁହନ୍ତୁ । କୋଉଠି ମିଳୁଛି ଏ ଜ୍ୟାକେଟ୍, କେତେ ଟଙ୍କା ।" ସେ ମୋତେ କହିଲେ- "ଟଙ୍କାରୁ କ'ଣ ମିଳିବ, ମୁଁ ଆପଣଙ୍କ ପାଇଁ ଏମିତି ଜ୍ୟାକେଟ୍‌ଟିଏ ଆଣିଦେବି ନିଶ୍ଚୟ ।"

ଏମିତି ଥିଲେ ସୁରେଶ ଭାଇ । ଏମିତି ସ୍ନେହଶୀଳ, ଏମିତି ଦରଦୀ ।

ଜୀବନ ଏମିତି, କିଛି କିଛି ଋଣ ଶୁଝା ହୋଇପାରେନା । ମଥାରେ ବୋହି ଅବଶିଷ୍ଟ ଜୀବନ କାଟିବାକୁ ପଡ଼େ । ସୁରେଶ ଭାଇଙ୍କ ନିକଟରେ ଆମେ ଋଣୀ । ସ୍ନେହର ଋଣୀ । ସେ ଋଣ ବାକୀ ରହିଲା । ସେଇ ଅବଶୋଷରେ ଏ ସ୍ମୃତିଚାରଣ । ଯା' ଭିତରେ ସମୟ ବିତିଗଲାଣି ଚାରିବର୍ଷ । ଅଥଚ ସମସ୍ତ ସ୍ମୃତି ଅଛି ଅମଳିନ । ଏବେ ବି ଟିକିଏ ମନେ ପକାଇଲେ ବାରମ୍ବାର ମନେ ପଡ଼ନ୍ତି ସୁରେଶ ଭାଇ । ତାଙ୍କର ସ୍ନେହବୋଳା କଥା । ଯୋଜନା ପରେ ଯୋଜନା, ସ୍ୱପ୍ନ ପରେ ସ୍ୱପ୍ନ । ଈର୍ଷା, ଅସୂୟା ଆଉ ପରଶ୍ରୀକାତରତାରେ ଭରା ଏ ସଂସାରରେ ସୁରେଶ ଭାଇ ଜଣେ ନିର୍ଭେଜାଲ ସ୍ନେହୀ ମଣିଷ । ତାଙ୍କୁ ଭୁଲିଯିବା ସମ୍ଭବ ନୁହେଁ । ତାଙ୍କୁ ମନେ ପକେଇବା ହିଁ ଆମର ଋଣ ପରିଶୋଧ । ❑

ପୂର୍ଣ୍ଣସରୋଜ, ପ୍ଲଟ ନଂ-୩୮/୧୨
ଲେନ୍-୧, ଜଗନ୍ନାଥ ବିହାର,
ଡେଲ୍‌ଟା, ଭୁବନେଶ୍ୱର-୭୫୧୦୦୩
ଫୋନ୍ - ୯୪୩୭୦୦୦୩୪୫



# ମୋ ସ୍ମୃତିରେ ସୁରେଶ ବଳବନ୍ତରାୟ

## ଅରବିନ୍ଦ ତ୍ରିପାଠୀ

ଓଡ଼ିଶାର ଲବ୍ଧପ୍ରତିଷ୍ଠିତ ସାହିତ୍ୟିକ, କବି, ଲେଖକ, ନାଟ୍ୟକାର ତଥା ଭାଷା ଓ ସଂସ୍କୃତିର ପ୍ରମୁଖ କାଣ୍ଡାରୀ ଖୋର୍ଦ୍ଧା ମାଟିର ସୁପୁତ୍ରମାନଙ୍କ ମଧ୍ୟରେ ସୁରେଶ ବଳବନ୍ତରାୟ ଥିଲେ ଅନନ୍ୟ ପ୍ରତିଭା । ମୋ ମା'ଙ୍କର (ତିଳୋତମା ମିଶ୍ର, ଅବସରପ୍ରାପ୍ତ ସରକାରୀ ଶିକ୍ଷୟିତ୍ରୀ)ଙ୍କ ସେ ଥିଲେ ସହପାଠୀ। ୧୯୬୮ ମସିହାରେ ନରଣଗଡ଼ର ଚିନ୍ତାମଣି ବିଦ୍ୟାନିକେତନରେ ଉଭୟେ ବିଦ୍ୟାର୍ଥୀ ଥିଲେ। ସେ ମଧ୍ୟ ଆମ ମାମୁଘର ସହିତ ଓ ମାମୁଙ୍କ ସହିତ ଜଡ଼ିତ ଥିଲେ। ମୁଁ ତାଙ୍କୁ ମାମୁ ଡାକୁଥିଲି। ବେଶି ଭଲଭାବେ ମୁଁ ତାଙ୍କୁ ଯେତେବେଳେ ଜାଣିଲି, ସେହି ଘଟଣାଚକ୍ରଟି ଥିଲା- ୨୦୦୪ ମସିହାରେ ସାମ୍ବାଦିକତା ପାଠ ସରିବା ପରେ।

ବିଭିନ୍ନ ମୁଦ୍ରିତ ଗଣମାଧ୍ୟମରେ ଯେତେବେଳେ ମୋର କୌଣସି ଲେଖାଟିଏ ପ୍ରକାଶିତ ହୋଇଥାଏ ସେତେବେଳେ ମାମୁ (ସୁରେଶ ବଳବନ୍ତରାୟ) ମୋତେ ଦୂରଭାଷ କରି ଉତ୍ସାହିତ କରନ୍ତି, ଅନୁପ୍ରାଣିତ କରନ୍ତି ଏବଂ ଆବଶ୍ୟକସ୍ଥଳେ ଆଉ ଟିକେ ଭଲ ଭାଷା ଦିଅ ଅବା ସେହିପରି କିଛି କହି ଉପଦେଶ ସର୍ବଦା ପ୍ରଦାନ କରିଥାନ୍ତି। ସେ ଭାରତ ସରକାରଙ୍କର କଷ୍ଟମ୍ସ ବିଭାଗରେ ପଦାଧିକାରୀ ଭାବେ ଭୁବନେଶ୍ୱରରେ କାର୍ଯ୍ୟରତ ଥାଆନ୍ତି। ପ୍ରାୟ ସଂଧ୍ୟା ସମୟରେ ୟୁନିଟ୍ -୨ସ୍ଥିତ ପୁରୁଣା ବସ୍‌ଷ୍ଟାଣ୍ଡ, ବୁକ୍ ଷ୍ଟୋର୍‌କୁ ନିୟମିତ ଆସନ୍ତି ଏବଂ ସେଠାରେ ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ପ୍ରମୁଖ ବିଷୟରେ ମୋ ସହିତ ଓ ଅନ୍ୟମାନଙ୍କ ସହିତ ଆଲୋଚନା କରନ୍ତି। ନନା-ବୋଉଙ୍କ ଦେହପା ଖବର ମୋତେ ପଚାରି ବୁଝନ୍ତି। ଜଣେ ମିଷ୍ଟଭାଷୀ, ସରଳ, ହସ ହସ ବଦନରେ ସମସ୍ତଙ୍କୁ ଆପଣାର କରି ପାରୁଥିବା ବ୍ୟକ୍ତିତ୍ୱଟିଏ। ଚଉଷଠି ଯୋଗିନୀ ପୁସ୍ତକ ଓ ଗୀତିନାଟ୍ୟ 'ଯୁଗକୁ ଯୁଗ ଏହିମତେ' ତାଙ୍କର ଅମର କୃତି।

ଓଡ଼ିଶାର ଲୋକକଳା, ସଂସ୍କୃତି, ଗବେଷଣା ଇତ୍ୟାଦି ଉପରେ ବେଶ୍ ଦକ୍ଷତା ଥିଲା ତାଙ୍କର। ବିଶ୍ୱାସ କରିହେଉନାହିଁ, ଏହା ମଧ୍ୟରେ ଛଅ ବର୍ଷ ଅତିକ୍ରାନ୍ତ ହୋଇଗଲାଣି। ମଣିଷ ଶରୀର ଚାଲିଯାଇଥାଏ ସତ ମାତ୍ର, କର୍ମ, ନିଷ୍ଠା, ଦକ୍ଷତା, ସମୟାନୁବର୍ତ୍ତିତା ଓ ଜ୍ଞାନ ଦ୍ୱାରା ମଣିଷ ସର୍ବଦା ଅମର ହୋଇଥାଏ। 'ମର୍ତ୍ତ୍ୟମଣ୍ଡଳେ ଦେହ ବହି ଦେବତା ହେଲେ ବି ମରଇ।' ଏହାର କବଳରେ ଆମେ ସମସ୍ତେ ବନ୍ଧା। ଏହି ଧ୍ରୁବ ସତ୍ୟକୁ ସ୍ୱୀକାର କରିବାକୁ ପଡ଼ିବ। ସୁରେଶ ମାମୁଙ୍କର ମୋ ପ୍ରତି ଯେଉଁ ସ୍ନେହ, ଶ୍ରଦ୍ଧା ଓ ଆଶୀର୍ବାଦ ତାହା ସବୁଦିନ ପାଇଁ ମନେରହିଥିବ। ଆଜିର ଏହି ଚତୁର୍ଥ ସ୍ମୃତିଚାରଣ ଦିବସ ଅବସରରେ ତାଙ୍କର ଅମ୍ଳାନ ଆତ୍ମା ପ୍ରତି ମୋର ଭକ୍ତିପୂତ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଛି। ■


ସହ ସଂପାଦକ,
ମୁଗୁପୁର ସମାଚାର
ଦୂରଭାଷ: ୯୯୩୭୬୮୯୬୮୩



# ଯାଦୁକର

## ଅଜୟ ସ୍ୱାଇଁ

ସେ ମୋର ମାମୁ ଥିଲେ ।

ମୁଁ ତାଙ୍କୁ ମାମୁ ଡାକୁଥିଲି, ସେଇଠୁ ପୁରୁଣା ବସଷ୍ଟାଣ୍ଡ ଖଟିରେ ସମସ୍ତେ ତାଙ୍କୁ ମାମୁ ଡାକିଲେ ।

ସେ ଥିଲେ ଯାଦୁକର ।

ସେ ଚିତ୍ର ଆଙ୍କୁଥିଲେ । ନାଟକ କରୁଥିଲେ, ଗପ, କବିତା, ଗବେଷଣା ସବୁଠି ଥିଲେ । ଏବଂ ତାଙ୍କର ଥିଲା ଏକ କଣ୍ଢେଇ ଘର, ମନରେ ହୃଦୟରେ ଥିଲେ ସେ ଏକ ଛୋଟପିଲା । ତାଙ୍କ ନାଁ ମୁଁ ଶୁଣିଥିଲି, ଅନେକ ଦିନରୁ ଦେଖା ହୋଇ ପାରିନଥିଲା । କାରଣ ସେ କୋରାପୁଟରେ ଥିଲେ । ବନ୍ଧୁ ସୂର୍ଯ୍ୟ ମିଶ୍ର ତାଙ୍କୁ ଦିନେ ଚିହ୍ନେଇ ଦେଲେ । ସେତେବେଳକୁ ତାଙ୍କର "ବାଲିରେଣୁ ମହାବନ୍ଧ'' ମୁଁ ପଢିଥାଏ । ସେ ମତେ ଡାକନ୍ତି ଅଜୟ ବାବୁ ।

ତା ପରଠୁ ଅନେକ ସାହିତ୍ୟ, ସିନେମା କାମରେ ମାମୁ ମୋ ସହ ଥିଲେ । ଆଦିବାସୀମାନଙ୍କ ଉପରେ ଡକ୍ୟୁମେଣ୍ଟାରୀ କଲାବେଳେ ତା'ର ସ୍କ୍ରିପ୍ଟ ଲେଖିଥିଲେ ସେ । ପବିତ୍ର ପ୍ରଧାନ, ମୁଁ ଓ ମାମୁ କୋରାପୁଟ ଯାଇ ଅନେକ ଦିନ ଏକାଠି ଥିଲୁ ।

ମାମୁ ଅନେକ ଲୋକଙ୍କୁ ଗବେଷଣାରେ ସାହାଯ୍ୟ କରୁଥିଲେ । ଏମିତିକି ଅନେକଙ୍କ ପାଇଁ ସେ ସବୁ କରୁଥିଲେ ।

ସେଥିପାଇଁ ତାଙ୍କର ଅନୁଶୋଚନା କେବେ ନଥିଲା । ସବୁବେଳେ ହସଟିଏ ଥିଲା ତାଙ୍କ ଓଠରେ । ତାଙ୍କର ସବୁଠୁ ଖରାପ ଗୁଣ ହେଲା, ମୁହେଁ ମୁହେଁ କହିଦେବା । ଏଇ ଯୋଗୁ ତାଙ୍କୁ ସହିପାରୁନଥିବା ଲୋକ ବି ଥିଲେ । ହେଲେ ସବୁବେଳେ କିଛି ନୂଆ କରିବାର ନିଶା ତାଙ୍କୁ ଘାରୁଥିଲା । ଏଣୁ ଆମ ବସ୍‌ଷ୍ଟାଣ୍ଡ ଖଟିରେ ସେ ଆରମ୍ଭ କଲେ କଫିହାଉସ୍ । ନବୀନ ଓ ପ୍ରବୀଣ ସାହିତ୍ୟିକମାନଙ୍କର ଖଟି ଚାଲୁଥିଲା ।

(ସେ ମରିବାର ଅନେକ ଦିନ ଆଗରୁ କଫିହାଉସ୍ ବନ୍ଦ ହେଇଯାଇଥିଲା କାହିଁକି ସେ କଥା ପରେ ।)

ସାହିତ୍ୟ, କଳା, ସଂସ୍କୃତିର ସବୁ ବିଷୟରେ ତାଙ୍କର ପ୍ରବେଶ ଥିଲା । ସେ ଥିଲେ ଜଣେ ନିରଳସ ସାହିତ୍ୟକର୍ମୀ । ଅନେକ ସାହିତ୍ୟ, ସଂସ୍କୃତି ଅନୁଷ୍ଠାନ ସହ ସେ ଜଡିତ ଥିଲେ । ତାଙ୍କୁ ଓ ପବିତ୍ରକୁ (ପବିତ୍ର ପ୍ରଧାନ)ମାଇଁ "ବଡଗୋଟି'' ଓ "ସାନଗୋଟି'' କହୁଥିଲେ ଥଟ୍ଟାରେ ।

ସବୁବେଳେ ଥଟ୍ଟା, ତାମ୍‌ସା, ହସଖୁସିର ମିଜାଜ୍ ଭିତରେ ମାମୁ ଥିଲେ ବାସ୍ତବରେ ସିରିୟସ୍ । ଯେଉଁ କାମରେ ମୁଣ୍ଡ ପୂରଉଥିଲେ, ତାକୁ ସାରିବା ଯାଏ ଲାଗୁଥିଲେ ।

ଆମ ଭିତରେ ସମ୍ପର୍କ ଥିଲା, ଭକ୍ତି ଥିଲା, ସମ୍ମାନ ଥିଲା । ମୋ ବିରୋଧରେ ଯଦି କିଏ କହିଲା, ମାମୁ ତାକୁ ଛାଡୁ ନଥିଲେ । ମୋ ଲେଖାର ସେ ଥିଲେ ଆଗ୍ରହୀ ପାଠକ ଓ ପ୍ରଶଂସକ ।

ଏବେ ବଂଚିଥିଲେ ତାଙ୍କୁ ୬୫ବର୍ଷ ହେଇଥାନ୍ତା ।

ଓଡିଆ ସାହିତ୍ୟ, ସଂସ୍କୃତି ଅନେକ କିଛି ପାଇଥାନ୍ତା ତାଙ୍କଠୁ । ହେଲା ନାହିଁ ।

ହସ୍‌ପିଟାଲ୍‌ରେ ତାଙ୍କୁ ଦେଖା କରିବାକୁ ଗଲାବେଳେ ଜାଣିନଥିଲି, ଏଇଟା ହିଁ ଶେଷଦେଖା ହେବ ବୋଲି ।

ନାଗୁ(ତାଙ୍କ ବଡପୁଅ ନୀଳଲୋହିତ) କହିଲା- ଆଶା ବହୁତ କମ୍। ସେ ବଂଚିଲେନି। ତାଙ୍କ ଗବେଷଣା, ଲେଖାଲେଖି, କଣ୍ଢେଇ ଘର ଛାଡି ଚାଲିଗଲେ। କାହାକୁ କହିକି ଗଲେନି ଯେ ଏସବୁ ତମକୁ ଲାଗିଲା।

ଦିନେ ଏ କଣ୍ଢେଇମାନେ, ପ୍ରତିମାମାନେ ଜୀବନ ପାଇବେ । ହାତ ଧରି ସୂର୍ଯ୍ୟୋଦୟ ଆଡକୁ ନେଇଯିବେ, ହେଲେ ସେଇ ଜୀବନ୍ୟାସ ମନ୍ତ୍ରଟି, କେବଳ ମାମୁ ହିଁ ଜାଣିଥିଲେ। କାହାକୁ କହିବା ପୂର୍ବରୁ ଚାଲିଗଲେ। ଏମିତିକି ନିଜକୁ ବଂଚେଇବା ମନ୍ତ୍ରଟି ବି ତାଙ୍କର ମନେ ପଡିଲାନି।

ତାଙ୍କ ପରେ ସବୁ ସେମିତି ଅଛି।

ସେମିତି ଅଛି ବସ୍ୱାଣ୍ଡ ଖଟି, କଣ୍ଢେଇ ଘର, ଅଧାଲେଖା ନାଟକ, ଗପ, ଅଧାଅଙ୍କା ଚିତ୍ରର କାନ୍‌ଭାସ୍, ରଙ୍ଗ ଶୁଖିଗଲାଣି ତୂଳୀ ଅଗରେ।

ସେମିତି ଆକାଶରେ ଦଳଦଳ ପକ୍ଷୀ।

ତାଙ୍କ ଘର ପାଖରେ ବଜାର ବଢିଛି, ଘର ବଢିଛି, ପିଲାମାନେ ବଡ ହେଲେଣି, ହେଲେ ସେ ନାହାନ୍ତି। ଖାଲି ଯା' ଫଟୋଟିଏ ହୋଇ ହସୁଛନ୍ତି। ତାଙ୍କର ବୟସ ବଢୁନାହିଁ।

କେହି ମରିଗଲା ପରେ ବୋଧେ ତାଙ୍କର ବୟସ ଆଉ ବଢେନାହିଁ।

ଆହା ! ସେମିତି ଥା'ନ୍ତୁ ମାମୁ। ସେମିତି ହସୁଥା'ନ୍ତୁ। ଯାଦୁକରର ହସ। ❑

ଜୟପୁର,
ଇଟିପୁର, ଭୁବନେଶ୍ୱର-୨





# ଜନ୍ମଦିନ ସୁରେଶ ଭାଇ

ଦେବଦତ୍ତ ପତି

ସୁଶାନ୍ତର ଚାହା ଖଟିରେ ଦେଖା ହୁଅନ୍ତି ସେ । କଳା ମଚ ମଚ ମଣିଷ ଜଣେ । ପାଟିରେ ଅହରହ ପାକୁଳେଇ ହେଉଥିବା ପାନ । ଓଠରୁ ଧାରେ ହସ ସହ ଗଡ଼ି ଆସୁଥାଏ ପାନ ଛେପ । ବିଚିତ୍ର ଲାଗିଥିଲେ ସେଦିନ । ଚିହ୍ନା ନାହିଁ, ତଥାପି ପକେଟରୁ ବାହାର କରି ବଢ଼ାଇ ଦେଲେ ବାସ୍ନା ଅଳେଇଚ । ପରେ ପରିଚୟ ସୃଷ୍ଟି ହେଲା ।

ମୁଁ ବି ନାଟୁଆ ଓ ଲେଖାଲେଖିରେ ରୁଚି ରଖିଥିବା ଜାଣି ସେ ଖୁବ୍ ଖୁସି ହେଲେ ।

ଏ ବିଚିତ୍ର ମଣିଷ ଜଣକ ଥିଲେ ସୁରେଶ ବଳବନ୍ତରାୟ । ସମସ୍ତଙ୍କର ଅତି ପ୍ରିୟ ସୁରେଶ ଭାଇ ।

ତାଙ୍କ ଅନୂଦିତ ନାଟକ 'ଧଡ଼ି ରାମାୟଣ'ରେ ମୁଁ ଅଭିନୟ କରୁଥାଏ । ନାଟକ ମଞ୍ଚସ୍ଥ ହେବା ପୂର୍ବରୁ ମଞ୍ଚରେ ଶେଷ ଅଭ୍ୟାସ ଚାଲିଥାଏ । ମୋର ଗୋଟିଏ ଦୃଶ୍ୟରେ ମୁଁ ସଂଳାପ ଭୁଲିଗଲି । ସମ୍ପୂର୍ଣ୍ଣ ଶୂନ୍ୟ ହୋଇଗଲି । ଯେତେ ଚେଷ୍ଟା କଲି କିଛି ମନେ ପଡ଼ିଲାନି । କାହା ପାଖରେ ବି ସ୍କ୍ରିପ୍ଟ ନଥାଏ । ପାଖକୁ ଆସିଲେ ସୁରେଶ ଭାଇ । କାନ୍ଧରେ ହାତ ପକାଇ ପୁଣି ବଢ଼େଇ ଦେଲେ ମିଠା ଅଳେଇଚ । କହିଲେ– ନିଅ, ଆଉ ଟିକେ ପାଣି ପିଇ ଦିଅ । ତୁମେ ଖୁବ୍ ଭଲ ଅଭିନୟ କରୁଛ । ବୋଧହୁଏ ମୋତେ (ନାଟ୍ୟକାର) ପାଖରେ ଦେଖି ବିଚଳିତ ହୋଇଯାଇଛ । ବ୍ୟସ୍ତ ହୁଅନି, ଠିକ୍ ହେବ । ବାସ୍ ହେଲା ମଧ । ନାଟକ ବହୁତ ଉଚ୍ଚକୋଟୀର ହୋଇଥିଲା । ନିର୍ଦ୍ଦେଶକ ଥିଲେ ଅଭିନ୍ନ ରାଉତରାୟ ।

ମୋର ଭାରି ଇଚ୍ଛା ଥିଲା ନାଟକର ଓ ସାହିତ୍ୟର ଲୋକମାନଙ୍କୁ ଗୋଟିଏ ମଞ୍ଚକୁ ଆଣିବା ପାଇଁ । ସେମାନଙ୍କୁ ଆମ ସହ ସାମିଲ କରିବା ପାଇଁ । 'ଉତ୍ତରପୁରୁଷ' ମୋ ନେତୃତ୍ୱରେ ଆରମ୍ଭ କଲା ନାଟକଥା । ଏକ ଆଲୋଚନା ଚକ୍ର, ଗପସପ । ସୁରେଶ ଭାଇ ଅନେକ ବୈଷୟିକ ସାହାଯ୍ୟ କରିଥିଲେ । ଯଦିଓ ସାହିତ୍ୟରୁ କେହି ଆସିଲେନି ଡାକିବା ସତ୍ତ୍ୱେ, ତଥାପି ସେଦିନ ସୁରେଶ ଭାଇ କହିଥିଲେ "ବ୍ୟସ୍ତ ହୁଅନି, ଆସିବେ ସବୁ ଦେଖିବ ।"

ସଦା ହସ ହସ । ଅସୀମ ଦା'ଙ୍କ ସହ ସୁରେଶ ଭାଇ ପାଖରେ ବସି ନାଟକ ଦେଖନ୍ତି । ଏକାଠି ଚାହା ପାନ ହୁଏ । ବାସ୍ ଆଜି ଆପଣଙ୍କ ଜନ୍ମଦିନ ସୁରେଶ ଭାଇ । ଆପଣ ନାହାନ୍ତି ବୋଲି ଭାବି ହେଉନି । ତଥାପି କହିବାକୁ ଇଚ୍ଛା – ଶୁଭ ଜନ୍ମଦିନ । ❑





# ଟୀର୍ଥକାକ ହେ....

## ଦେବାଶିଷ ମହାପାତ୍ର

ଟୀର୍ଥକାକ ହେ....! ଉଡ଼ିଗଲ ଦୂରେ କାହିଁ,
ତୁମ ଆସିବାକୁ ଅନେଇ ବସିଛୁ ଆଖି ଜମା ପାଉନାହିଁ ।
ନାଟ୍ୟ ଗ୍ରାମକୁ ଉଡ଼ିଗଲ କାକ ? ଉଡ଼ିଗଲ ହୀରାପୁର ?
ପୁରୀକୁ ଗଲ କି ଅବା ଅନୁଗୁଳ ଅବା ଗଲ ମହୀଶୂର ?
ବଟାନିରେ ସିନା ଡିଗ୍ରୀ ତୁମର କଳା, ସଂସ୍କୃତିରେ ନିଶା
ଉଡ଼ିଗଲ ଏବେ କାହିଁ କେତେ ଦୂରେ ପାଇ ପାସପୋର୍ଟ ଭିସା ।
ନରଣଗଡ଼ କି ଫେରିଗଲ କାକ 'କହ୍ନେଇକୁ ଖୋଜି ଖୋଜି'
ତୁମେ ଗଲା ପରେ ଉର୍ମିଳା, ଅନ୍ୟା, ନୀଳ, ରଜତଙ୍କ ଅଶ୍ରୁ ଯାଇଛି ଭିଜି ।
'ବାଲିରେଣୁ ମହାବନ୍ଧ' ଲେଖିଲ ଲେଖିଲ ମନ୍ଦିର କଥା ।
'ଟୀର୍ଥକାକ' ହେ ତୁମେ ଗଲା ପରେ ସଭିଙ୍କ ମନରେ ବ୍ୟଥା ।
ଭଅଁରଗଡ଼ର ଅପରେସନ୍ କଲ- ସେଇ ସମୟକୁ ଏଇ ସହର ବି ଲେଖିଲ ଭୁବନେଶ୍ୱର,
'ଟୀର୍ଥକାକ' ହେ କାହିଁଗଲ ତୁମେ ହଜିଗଲା ସେଇ ସ୍ୱର !!
ନାଟକରେ ଥିଲା ନିଶା ତ ତୁମର ଥିଲା ଲୋକକଳା ନିଶା,
ନରଣଗଡ଼ରୁ ହୀରାପୁର ଯାଏଁ କଳି ଝଗଡ଼ାରେ କରୁଥିଲ ମିଳାମିଶା ।
'ଟୀର୍ଥକାକ'ହେ ଉଡ଼ିଗଲ ଦୂରେ କାହିଁ,
ତୁମ ଆସିବାକୁ ଅନେଇ ବସିଛୁ ଆଖି ଜମା ପାଉନାହିଁ ।

ବିଜୟ ଭବନ, ୧୫୮୮
କେଉଟ ସାହି ଛକ, ଭୁବନେଶ୍ୱର
ମୋ - ୮୭୬୩୫୦୪୪୩୫





# ଅମ୍ଳାନ ସ୍ମୃତି

ରାଜ କିଶୋର ଦାସ

ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡ୍‌ରେ ହିଁ ସୁରେଶ (ବଳବନ୍ତରାୟ) ବାବୁଙ୍କ ସହ ପ୍ରଥମେ ଦେଖାହୋଇଥିଲା । ତା' ପୂର୍ବରୁ ତାଙ୍କ ଲେଖା ସହ ମୁଁ ପରିଚିତ ଥିଲି । ପ୍ରଥମ ଦେଖାରେ ହିଁ ତାଙ୍କ ଓ ମୋ ଭିତରେ ଏକ ଶ୍ରଦ୍ଧାଶୀଳ ସମ୍ପର୍କ ଗଢ଼ିଉଠିଲା ତାହା ଶେଷଯାଏ ଅକ୍ଷୁର୍ଣ୍ଣ ଥିଲା । ସୁରେଶ ବାବୁଙ୍କର ସବୁ ଲେଖା ମୁଁ ଆଜିଯାଏଁ ପଢ଼ିପାରିନି । ଯେତିକି ବା ପଢ଼ିଛି ଅଧିକାଂଶ ଗବେଷଣାମୂଳକ ତ ପୁଣି କେତେକ ତତ୍ତ୍ୱାଧାରମୂଳକ ।

ପାରଳାଖେମୁଣ୍ଡିରେ 'ସାହିତ୍ୟ ଶ୍ୱେତପଦ୍ମ' ନାମକ ମୋର ଏକ ସାହିତ୍ୟ ସଂଗଠନ ଥିଲା । ପ୍ରତିବର୍ଷ ଏହାର ବାର୍ଷିକ ଉତ୍ସବ ହେଉଥିଲା । କବି କଳହଂସ ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ନାମରେ ଗୋଟେ ପୁରସ୍କାର ଓ ପାରଳାଖେମୁଣ୍ଡିର ଜଣେ ସ୍ୱନାମଧନ୍ୟ ନାଟ୍ୟକାର, ନିର୍ଦ୍ଦେଶକ, ଗୀତିକାର, ସଂଗୀତକାର, କବି କଳାସାଗର ରଘୁନାଥ ପଟ୍ଟନାୟକଙ୍କ ନାମରେ କଳାସାଗର ରଘୁନାଥ ପଟ୍ଟନାୟକ ସ୍ମୃତିସମ୍ମାନ ଦିଆଯାଉଥିଲା । ଆମ୍ଭେ ଅନୁଭବ କରିଥିଲୁ ଯେ ଏହି ପୁରସ୍କାର ପାଇଁ ସୁରେଶ ବଳବନ୍ତରାୟ ଜଣେ ଯୋଗ୍ୟ ବ୍ୟକ୍ତିତ୍ୱ । ଏଣୁ ତାଙ୍କୁ ଥରେ ଅନୁରୋଧ କରିଥିଲୁ ପାରଳାଖେମୁଣ୍ଡି ଆସି 'ସାହିତ୍ୟ ଶ୍ୱେତପଦ୍ମ' ବାର୍ଷିକ ଉତ୍ସବରେ ଯୋଗଦାନପୂର୍ବକ ଏହି ପୁରସ୍କାର ଗ୍ରହଣ କରିବାପାଇଁ ଓ ସେ ଶ୍ରଦ୍ଧାର ସହ ଏହି ସମ୍ମାନକୁ ଗ୍ରହଣ କରିଥିଲେ ।

ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡ୍‌ଠାରେ ସାହିତ୍ୟିକମାନଙ୍କର ଖଟି ହେଉଥାଏ । ସେହି ଖଟିର ସୁରେଶ ବାବୁ ଜଣେ ପୁରୋଧା ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ସର୍ବଦା ସମସ୍ତଙ୍କ ସହ ସଦ୍‌ଭାବନା ରଖି ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ଚିନ୍ତା କରୁଥିଲେ । ଥରେ କଥାକାର ଅଜୟ ସ୍ୱାଇଁ, ଅରବିନ୍ଦ ରାୟ, ସୁରେଶ ବାବୁ ଓ ଆଉ କିଛି ସାହିତ୍ୟିକ ଜାମ୍‌ସେଦ୍‌ପୁର ଯାଇଥିଲୁ । ସେଠି ଦୁଇଦିନ ରହି ଏପ୍ରିଲ୍ ପହିଲାରେ ଉତ୍କଳଦିବସ ଉତ୍ସବରେ ଯୋଗଦାନ କରିଥିଲୁ ।

ସେ ତାଙ୍କ ପୁସ୍ତକ 'ଭାରତଲୀଳା' ଓ 'ମନ୍ଦିରମାଳିନୀ ଭୁବନେଶ୍ୱର' ମୋତେ ପ୍ରଦାନ କରିଥିଲେ । ତାଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧା ଆଜି ବି ଅଛି, ତାହାର କାରଣ ସେ ଏହାର ହକ୍‌ଦାର୍ । ସେହି ଅମ୍ଳାନ ସ୍ମୃତିକୁ ମନରେ ଧରି ଆଜି ତାଙ୍କୁ ପ୍ରଣାମ ଜଣାଉଛି । ❑





# କଣ୍ଢେଇ ପାଲଟି ଯାଇଥିବା ମଣିଷଟି ପାଇଁ

ମଧୁମିତା ଦେବୀ

ସେଦିନ କେମିତି ଗୋଟେ ଆକୁଳତା ମୋ ମନକୁ ଆଚ୍ଛନ୍ନ କରି ରଖିଥିଲା ଦିନସାରା। ସଂଧ୍ୟାରେ ଟିଭି ଆଗରେ ସମ୍ବାଦକୁ ଅପେକ୍ଷା କରି ରହିଥିବାବେଳେ ସମ୍ବାଦରେ ଶୁଣିଲି ଦାଦା ଆଉ ନାହାନ୍ତି। ନିଜକୁ ହଠାତ୍ ବିଶ୍ୱାସ କରିପାରି ହେଲାନି। କାରଣ କିଛିଦିନ ଆଗରୁ ଆମ ଘରେ ଆମେ ଦାଦା, ମୋ ଭାଇ ଭଉଣୀ ସବୁ ଖଟି କରୁଥିଲୁ ଯେ, ଗାଁରେ ଡ୍ରାମା ହେବ ଆଉ ଭୋଜି ହେବ। ମୋତେ ଗାଳି ପଡ଼ିଲା, ଲେଖାଲେଖି ମୁଁ କାହିଁକି କରୁନି।

ଏମିତି କାହାକୁ କିଛି ନକହି ହଠାତ୍ ଚାଲିଯିବାଟା କ'ଣ ଠିକ୍ ହେଲା ? ମୋ ପିଲାଦିନ,. କଲେଜ, ବାହାଘର - ସବୁ ଯାଗାରେ ତାଙ୍କ ଉପସ୍ଥିତି ବାରି ହୋଇଯାଏ। ସେ ମୋତେ ବହୁତ ଭଲ ପାଉଥିଲେ ଆଉ କହୁଥିଲେ ଲେଖାଲେଖି କେବେ ଛାଡ଼ିବୁନି। ଆମେ ସବୁ ପାଠପଢ଼ିଲାବେଳେ ତାଙ୍କ ପାଠପଢ଼ା, ଲେଖାଲେଖି ନେଇ ଆମେ ସବୁ ଆନନ୍ଦିତ ହେଉ। ବାବା କୁହନ୍ତି ସୁର ତା' ଦାଦାଙ୍କ ପରି। କାରଣ ଢେଙ୍କେ ଆମ ଅଞ୍ଚଳର ପ୍ରଥମ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ପ୍ରଧାନଶିକ୍ଷକ। ତାଙ୍କ ଛାତ୍ରମାନେ ସମସ୍ତେ ପ୍ରତିଷ୍ଠିତ ଏବଂ ନାମକରା। ସେ ଆମ ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ବହୁତ ଭଲ ନମ୍ବର ରଖିଥିଲେ ଏବଂ ସେତେବେଳକୁ ତାଙ୍କ ଲେଖାଲେଖି ଆରମ୍ଭ ହୋଇଯାଇଥିଲା। ସବୁବେଳେ ହସ ହସ ଏବଂ କମ୍ କଥା କହୁଥିବା ମଣିଷଟି ହଠାତ୍ ଆମ ଗହଣରୁ କେମିତି ଚାଲିଗଲା କିଛି ବୁଝିହେଲାନି। ସବୁବେଳେ ସବୁ କଥାରେ ସେ ନେତୃତ୍ୱ ନେଉଥିଲେ, ଏପରିକି ଖୁଡ଼ି ଓ ପିଲାମାନେ ଆସିବା ପରେ ବି ତାଙ୍କ ସାମାଜିକ ଜୀବନରେ କିଛି ବିଶେଷ ପରିବର୍ତ୍ତନ ହୋଇନଥିଲା। ପିଲାମାନଙ୍କୁ ଯେମିତି ଭଲ ପାଉଥିଲେ ଆମ ସମସ୍ତଙ୍କୁ ବି ବହୁତ ଭଲ ପାଉଥିଲେ। ଆମ ଅଞ୍ଚଳର ପ୍ରସିଦ୍ଧ ପ୍ରଥା ଓ ପୂଜାସବୁକୁ ବଞ୍ଚାଇ ରଖିବା ପାଇଁ ଶେଷ ଯାଏଁ ଉଦ୍ୟମ ଜାରି ରଖିଥିଲେ। ତାଙ୍କ ନାଟକ ଏବଂ ଉପନ୍ୟାସ, ଗଳ୍ପ ସବୁ ବହୁତ ପୁରସ୍କାର ପାଇଲା ସବୁଠୁ ବଡ଼ ଆକର୍ଷଣ ତାଙ୍କ କଣ୍ଢେଇ ସଂଗ୍ରହାଳୟ। ବିଶେଷ ଧ୍ୟାନ ରଖୁଥିଲେ ସେମାନଙ୍କର। ସେମାନେ ଧାଡ଼ିଧାଡ଼ି ହୋଇ କାଚ ଆଲମାରି ଭିତରେ ସଜେଇ ହୋଇ ରହିଥା'ନ୍ତି। କାମରୁ ଟିକେ ବି ରିହାତି ମିଳିଲେ ନାଟକ ଲେଖା, କଣ୍ଢେଇ ଆଉ ବିଭିନ୍ନ ସାଙ୍ଗଠନିକ କାମରେ ସେ ବ୍ୟସ୍ତ ରହୁଥିଲେ। ମୋତେ ସେଇ ପିଲାଦିନର ଛୋଟ ଝିଅଟେ ବୋଲି ଭାବୁଥିଲେ। ତାଙ୍କ ଆଖି ଆଗରେ ମୋର ବୟସ, ପିଲାମାନେ ବି ସମୟକ୍ରମେ ବଢୁଥିଲେ। ମୁଁ ବି ଦାଦାଙ୍କୁ ଦେଖିଲେ ହିଁ ଫେରିଯାଉଥିଲି ମୋ ହଜିଯାଇଥିବା ପିଲାଦିନକୁ। ଲେଖାଲେଖି କରିବାର ଉତ୍ସାହ ତାଙ୍କଠୁ ହିଁ ପାଇଥିଲି। ତାଙ୍କ ପିଲାମାନେ ବି ତାଙ୍କ ପରି ମେଧାବୀ। ଖୁଡ଼ୀ ମୋ ମାଉସୀ ଥିଲେ, ସମୟକ୍ରମେ ଖୁଡ଼ି ହୋଇଗଲେ। ଦାଦା ଲେଖାଲେଖି ପାଇଁ ଯେତିକି ଉତ୍ସାହିତ କରୁଥିଲେ ନିଜ ପିଲାମାନଙ୍କୁ ବି ତାଙ୍କ ପରି ଗଢ଼ିଥିଲେ। ସବୁ ଓଡ଼ିଆ ଘରର ପରମ୍ପରା ସେ ପାଳନ କରୁଥିଲେ ଏବଂ ପିଲାମାନଙ୍କୁ ବି ଉତ୍ସାହିତ କରୁଥିଲେ ହଜିଯାଇଥିବା ପରମ୍ପରା ସବୁ ପାଳନ କରିବା ପାଇଁ। ଆମେମାନେ ବି ସବୁ ମାନିବାକୁ କହୁଥିଲେ କାରଣ ପରମ୍ପରା ଏବଂ ଐତିହ୍ୟକୁ ବଞ୍ଚାଇ ରଖିବା ଆମର ମୂଳମନ୍ତ୍ର ବୋଲି ସେ ଭାବୁଥିଲେ। ସେ

ଆମ ଅଞ୍ଚଳରେ ପ୍ରସିଦ୍ଧ ଥିଲେ ତାଙ୍କ ଲେଖା, ପାଠ ପାରମ୍ପରିକ ଖାଦ୍ୟ, ପୂଜାପର୍ବାଣି ସବୁ ବଞ୍ଚାଇ ରଖିବାର ଆନ୍ଦୋଳନରେ। ସବୁ ଅଧାରେ ଛାଡ଼ିଦେଇ ଏମିତି ଚାଲିଯିବେ କିଏ ଜାଣିଥିଲା ! ସେ ଯିବା ପରେ ମୋର ସବୁ ନିଜ ମଣିଷମାନେ ସବୁ ଉଭେଇଯିବାକୁ ଆରମ୍ଭ କଲେ। କିଏ ଆଉ ନାହିଁ ମୋତେ ଛୋଟ ଝିଅ କହି ଡାକିବାକୁ। ମୋତେ ଭଲ ପାଉଥିବା ମଣିଷମାନେ ବି ଆଉ ନାହାନ୍ତି। ହୁଏତ ଯେଉଁଠିକି ଗଲେ କେହି ଫେରେନାହିଁ ସେଇ ରାଜ୍ୟରେ ସମସ୍ତେ ଏକାଠି ହୋଇ ଗପୁଥିବେ। ମୋତେ ବେଳେବେଳେ ଲାଗେ ତାଙ୍କ କଣ୍ଢେଇମାନଙ୍କ ଭିତରେ ଛୋଟ କଣ୍ଢେଇଟିଏ ହୋଇ ସେ ରହିଯାଇଛନ୍ତି ଆଉ ମଜା ଦେଖୁଛନ୍ତି ତାଙ୍କ ଅବର୍ତ୍ତମାନରେ ଆମେ କେମିତି ଦିଶାହରା। ଆଉ କେହି ନାହିଁ ତାଙ୍କ ଯାଗାରେ। ଅବସର ନେଲାପରେ ଗାଁରେ ରହିବେ ଆଉ ପିଲାମାନଙ୍କ ବାହାଘର ସାରି ଲେଖାଲେଖିକୁ ସମୟ ଦେବେ ଆଉ ସମାଜସେବା କରିବେ କହୁଥିଲେ। ତାଙ୍କ ପରେ ସବୁ କେମିତି ଗୋଟେ ଅନ୍ଧାରର କୁହୁଡ଼ି ମାଡ଼ିଯାଇଛି ଘରିଆଡ଼େ। ପିଲାମାନେ ସମସ୍ତେ ପ୍ରତିଷ୍ଠିତ ହୋଇଗଲେଣି। ତାଙ୍କ ବାର୍ଷିକୀ ପାଳନ ହୋଇଆସୁଛି ମୋ ସାନ ଭଉଣୀ ଅନ୍ୟା ଅନୁରୂପାର ଉଦ୍ୟମରେ। ପିଲାଦିନେ ରବିବାର ଦିନ ଆସିଲେ ଆମ ପୁରୀ ଘରେ ଆସର ବସେ। ଦାଦା ହଷ୍ଟେଲରୁ ଆସନ୍ତି। ଗପ ଶୁଣିବା ସହ ଖାସି ମାଂସ ତରକାରୀ କରି ମୋ ଜେଜେମା' ରହିଁ ବସିଥାଏ। ସେସବୁ ଦିନଗୁଡ଼ା ସ୍ୱପ୍ନ ପରି। ବାହାଘର ଗୀତ ଗୋଟେ ପରମ୍ପରା ଥିଲା ଆଗରୁ। ଗୀତବହି ଛପା ହଉଥିଲା। ମୋ ବାହାଘର ଗୀତ ଛଡ଼ା ଅନ୍ୟ ସବୁ ବନ୍ଧୁବାନ୍ଧବମାନଙ୍କ ପୁଅ ଝିଅ ବାହାଘର ଗୀତ ପାଇଁ ତାଙ୍କୁ ଲୋଡ଼ା ପଡ଼େ। ସେ ସଂପାଦକ ଆଉ ଲେଖକ। ମୁଁ ନିଜ ବାହାଘରରେ ଯେତିକି କାନ୍ଦିନଥିଲି ବାହାଘର ଗୀତ ବହି ଯେତେବେଳେ ଆଖିରେ ପଡ଼େ ସବୁବେଳେ କାନ୍ଦ ଲାଗେ। ଦାଦା ଚାଲିଯିବା ପରେ ପୁସ୍ତକମେଳା ବୁଲିଯିବା ପ୍ରାୟତଃ ବନ୍ଦ କହିଲେ ଚଳେ। କାରଣ ସେସବୁ ଯାଗାକୁ ଗଲେ ଦାଦା ବହୁତ ମନେପଡ଼ନ୍ତି। ଜାଣେନା, ମୋ ଜୀବନକାଳ ଭିତରେ ହଜିଯାଇଥିବା ମଣିଷମାନଙ୍କ ସ୍ମୃତିକୁ ନେଇ କେମିତି ଜୀବନ କଟେଇବି। ମୋ ଗୀତ ଶିଖା ଆଉ ନାଚ ଶିଖା ବନ୍ଦ ନ କରିବା ପାଇଁ ମୋ ଜେଜେମା', ତାଙ୍କ ପିଉସୀଙ୍କୁ ସେ ବହୁତ ବୁଝାଇଥିଲେ। ହେଲେ ସେ ତା'ର ପୁରୁଣାକାଳିଆ ଢ଼ଂଗରେ ଯୁକ୍ତି କରିବସିଲା। ବଡ଼ମାନଙ୍କୁ ସମ୍ମାନ ଦେଇ ଚୁପ୍ ରହିବା ଛଡ଼ା କିଛି ମୋ ପାଇଁ ନାହିଁ ବୋଲି ଜାଣି ଆଉ କିଛି କହିନଥିଲେ କି ମୋ ବାହାଘର କାର୍ଡ଼ରେ ନାଁ ଲେଖିବାବେଳେ ବାବାଙ୍କୁ ପଚାରିନଥିଲେ। ଏତେ ଶୀଘ୍ର ବାହାଘର କରିଦେବା କ'ଣ ନିହାତି ଦରକାର ନନା ? ଝିଅମାନଙ୍କୁ ବହୁତ ଭଲ ପାଉଥିଲେ- ଭଉଣୀ ହେଉ, ଝିଆରୀ ବା ତାଙ୍କ ଅଲିଅଳୀ ଅନ୍ୟା ସମସ୍ତେ ତାଙ୍କ ଝିଅ। ମୁଁ ନିଜକୁ ବେଳେବେଳେ ଅନ୍ୟା ଭିତରେ ଦାଦାଙ୍କୁ ଦେଖେ। ତା' ଭବିଷ୍ୟତ ନେଇ ବହୁତ ସ୍ୱପ୍ନ ଦେଖେ ବି। ମୋ ଝିଅ ବୟସର ଭଉଣୀଟି ପାଇଁ ମୋ ହୃଦୟରେ ଦାଦାଙ୍କ ଅବର୍ତ୍ତମାନରେ ସେ ବସିସାରିଛି କେବେଠୁ।

ମୋ ସ୍କୁଲ ପଢ଼ିବାବେଳେ ଦାଦା ପୁରୀରେ ସାମନ୍ତ ଚନ୍ଦ୍ରଶେଖର କଲେଜରେ ବି.ଏସି ପଢୁଥା'ନ୍ତି। ପ୍ରତି ରବିବାର ଘଣ୍ଟାବେଳେ ତାଙ୍କ ହଷ୍ଟେଲ ପାଖରେ ଆମେ ଭାଇଭଉଣୀ ଅପେକ୍ଷା କରିଥାଉ ତାଙ୍କ ସାଙ୍ଗେ ସମୁଦ୍ର କୂଳକୁ ବୁଲିଯିବା ପାଇଁ। ସେତେବେଳେ ତାହା ଆଜିକାଲିକାର ସମୁଦ୍ରକୂଳ ପରି ନଥିଲା, ସଫାସୁତୁରା ଶାନ୍ତ ଝାଉଁବଣଭରା ଥିଲା କୂଳ। ଆମେ ସବୁ ଶାମୁକା ଗୋଟେଇବା ଓ ବାଲିଘର କରିବାରେ ମାତିଥାଉ ଆଉ ସେ ମଗ୍ନ ଥା'ନ୍ତି ଲେଖିବାରେ। କ'ଣ ଲେଖନ୍ତି ଏତେ ମୁଣ୍ଡରେ ପଶୁନଥିଲା ଜମା। ବଡ଼ ହେଲା ପରେ ମୋ ଲେଖା ପଢ଼ି ମନ୍ତବ୍ୟ କରୁଥିଲେ- ଏତେ ବୌଦ୍ଧିକ ଲେଖା କାଇଁକି ଲେଖୁଛୁ ? ସରଳ, ସାବଲୀଳ ଭଙ୍ଗୀ ସବୁ ପାଠକମାନଙ୍କୁ ସୁହାଏ। ବୁଝେଇ ଦିଅନ୍ତି ମନ ଭିତରେ ଗୁଡ଼େଇ ତୁଡ଼େଇ ହୋଇ ରହିଥିବା ଭାବନା ସବୁକୁ କେମିତି ସଜେଇ ହେବ ଅକ୍ଷରରେ। ତାଙ୍କ ଅପ୍ରକାଶିତ ଲେଖାସବୁ କିଏ ପୂରଣ କରିବ କେଜାଣି ତାଙ୍କୁ ଖୋଜୁଛନ୍ତି ଠାକୁରାଣୀ, ପୋଖରୀ ଆଉ ଖଟି। କିଏ ସେଇ ଖାଲି ଜାଗା ସବୁ କିଏ ଭରିବ କେଜାଣି ! ଆଜିକାଲି ବହୁତ ଖାଲି ଖାଲି ଲାଗେ- କିଏ ନାହିଁ ମନକଥା ବୁଝିବା ପାଇଁ, ତାଙ୍କ ପଛେ ପଛେ ସମସ୍ତେ ତ ତକା ତକି ହୋଇ ଚାଲିଗଲେ। କହିଦେଇ ବି ଗଲେନି ତାଙ୍କ ଅନୁପସ୍ଥିତିରେ ଆମପରି ମଣିଷମାନଙ୍କୁ କିଏ ବାଟ ଦେଖାଇବ। ମୁଁ ଲେଖାଲେଖି ବହୁତ ଦିନ ହେଲା ପ୍ରାୟ ଛାଡ଼ି ଦେଇଥିଲି। ଯେତେବେଳେ ଅନ୍ୟା ମୋତେ ଲେଖା ପାଇଁ କହିଲା ମୁଁ ଡରିଗଲି, ମନ ଭିତରେ ଖୁନ୍ଦି ହୋଇ ରହିଥିବା ସବୁ ଭାବନା ପାଣି ହୋଇ ବୋହିଗଲେ ଆଖିରୁ। ଲେଖିଲେ ହୁଏତ ଉପନ୍ୟାସ ଗୋଟିଏ ହୋଇଯିବ। ବହୁତ କଟାକଟି, ବନାନ ଶୁଦ୍ଧି ପରେ ଏତିକି ଭାବୁଛି ଯେ ଠିକ୍ ହେବ ଏଇଥର ପାଇଁ। ସୁର ଦାଦାଙ୍କ ପାଇଁ କେବେ ମୋତେ ତାଙ୍କ ସ୍ମୃତିରେ କିଛି ଲେଖିବାକୁ ପଡ଼ିବ ମୁଁ ଭାବିନଥିଲି। କାରଣ ବହୁତ ବର୍ଷ ତାଙ୍କ ସାଂଗରେ ସମୟ ବିତାଇ ସାହିତ୍ୟଚର୍ଚ୍ଚା କରିବାକୁ ଇଚ୍ଛା ଥିଲା। ଗାଁରେ ସବୁ ବର୍ଷ ଦଶହରା ଓ କୁମାରପୂର୍ଣ୍ଣିମାରେ ନାଟକ କରାଯାଏ । ସ୍ୱର୍ଗତ ଗୋପାଳ ଛୋଟରାୟଙ୍କ ନାଟକଗୁଡ଼ିକ ସେ ମଂଚସ୍ଥ କରାନ୍ତି। ଆମ ଘରେ ଗହଳି ଚହଳି ଲାଗି ରହିଥାଏ। ପୂରା ଭୋଜି ଆଉ ପୂଜାର ମାହୋଲ। ସବୁଠୁ ମୋତେ ପ୍ରଶଂସା କରିଥିଲେ ବାହାଘର ପରେ ମୋର ପାଠ ପଢ଼ିବାର ନିଷ୍ପତ୍ତିକୁ ନେଇ। ତାଙ୍କ ପରେ ସବୁ ପରମ୍ପରା ପିଲାମାନେ, ବିଶେଷକରି ଅନ୍ୟା ବଜାୟ ରଖିଛି ଏବଂ ଆମ ସବୁଙ୍କୁ ଏକାଠି ବାନ୍ଧି ରଖିଛି। ମୁଁ ଦାଦାଙ୍କୁ ଯେତେ ପ୍ରଣାମ କଲେ ବି କମ୍ ହେବ। ❑



# କଫି ହାଉସ୍

ବିଜୟ ମଲ୍ଲ

ସୁରେଶ ଭାଇ ମୋ ବନ୍ଧୁ ଓ ଭାଇ ଉଭୟ ଥିଲେ। ବୟସରେ ମୋଠୁ ଅଳ୍ପ ବଡ଼, ତେଣୁ ଭାଇ ବୋଲି ସମ୍ବୋଧନ କରୁଥିଲି। କିନ୍ତୁ ଆମମାନଙ୍କ ଭିତରେ ସମ୍ପର୍କ ବନ୍ଧୁଭଳି ଥିଲା। ସାହିତ୍ୟ ହଉ କି ଅନ୍ୟକିଛି, ସବୁ ଆଲୋଚନାରେ ତାଙ୍କ ଅପ୍ନାପଣ ବାରିହୋଇପଡୁଥିଲା।

ଅନ୍ୟବେଳେ ସାଧାସିଧା ଲାଗୁଥିବା ସୁରେଶ ଭାଇ କାନ୍ଧରେ ଝୁଲାଟିଏ ପକେଇଦେଲେ ପୂରା ସାହିତ୍ୟିକଟିଏ ଭଳି ଦିଶନ୍ତି, ଯଦିଓ ସେ ନିଜକୁ କେବେ ସାହିତ୍ୟିକ ବୋଲି ଦାବି କରନ୍ତିନି।

ସେ ଗପ-କବିତା-ପ୍ରବନ୍ଧ ଲେଖୁଥିଲେ, ଗବେଷଣା ବି କରୁଥିଲେ। ତାଙ୍କ ଚାକିରୀରୁ ସମୟ ବାହାର କରି ଏତେକଥା ସେ କେମିତି କରୁଥିଲେ, ମୁଁ ଭାବି ଆଶ୍ଚର୍ଯ୍ୟ ହେଉଥିଲି। ସୁରେଶ ଭାଇଙ୍କ ସମସାମୟିକ ଭୁବନେଶ୍ୱର ସାହିତ୍ୟ ପରିଧିର ଉଜ୍ଜ୍ୱଳ ତାରକାଙ୍କ ଭିତରେ ବି ସେ ସ୍ପଷ୍ଟ ବାରି ହୋଇପଡୁଥିଲେ। ଅତ୍ୟନ୍ତ ସାଧାରଣ, ପୁଣି ଆକର୍ଷଣୀୟ ତାଙ୍କ ବକ୍ତବ୍ୟ ଯୋଗୁଁ, ମୋ ଜାଣିବାରେ ଆମେ ସମସ୍ତେ ତାଙ୍କୁ ଖୁବ୍ ଭଲ ପାଉଥିଲୁ ।

ଥରେ ଆମେ ସବୁ କୋଲକାତା ଯାଇଥିଲୁ ସାଥୀହୋଇ ଗୋଟେ ସାହିତ୍ୟ କାର୍ଯ୍ୟକ୍ରମରେ। ବଙ୍ଗଳା ଓ ଓଡ଼ିଆ ସାହିତ୍ୟର ଗାଳ୍ପିକମାନଙ୍କର ଏକ ଭାବ ଆଦାନପ୍ରଦାନକାରୀ କାର୍ଯ୍ୟକ୍ରମ ଥିଲା। ଯେଉଁଥିରେ ଗୌରହରି ଦାସଙ୍କ ଠାରୁ ଆରମ୍ଭକରି ଅରବିନ୍ଦ ରାୟଙ୍କ ପର୍ଯ୍ୟନ୍ତ କଥାଶିଳ୍ପୀମାନେ ସାମିଲ ହେଇଥିଲେ। ସେହି ସମ୍ମିଳନୀ ସମୟରେ ଆମେ ଥରେ ନ୍ୟାସନାଲ୍ ଲାଇବ୍ରେରୀ ବୁଲିଯାଇଥିଲୁ। ସେହିଦିନ ସନ୍ଧ୍ୟାରେ ଢ଼େର୍ ସମୟ ଯାଏ ସୁରେଶ ଭାଇ ଫେରିଲେନି।

ସେ ଯେତେବେଳେ ଫେରିଲେ, ପଚାରିବାରୁ କହିଲେ କଫି ହାଉସ୍‌କୁ ଯାଇଥିଲେ ! ସୃଜନକର୍ମୀମାନଙ୍କର ମିଳନସ୍ଥଳ କଫିହାଉସ୍। ମୋ ମନ ଦୁଃଖ ହେଲା ମୁଁ ଯାଇପାରିଲିନି ବୋଲି ! ସୁରେଶ ଭାଇଙ୍କ ଉପରେ ଅଭିମାନ କଲି, ମତେ କାହିଁକି ଡାକିଲେନି। ସେ ସ୍ୱାଭାବିକଭାବେ ଉତ୍ତର ଦେଇଥିଲେ- ନିଶ୍ଚୟ ମତେ ଦିନେ ବୁଲେଇ ନେବେ !

ସେଥର ଗସ୍ତକାଳରେ ସେ ସମୟ ପାଇଲୁନି। ଆଉ ଏବେ ଭାବୁଚି, କେବେ ବି ଆଉ ସେଦିନ ଆସିବନି, ଯୋଉଦିନ ସୁରେଶ ଭାଇ ମତେ କଫିହାଉସ୍‌କୁ ବୁଲେଇ ନେବେ।

ହାଏ ! ଜୀବନରେ ଏମିତି ଅନେକ ଆଶାର କଫିକପ୍ ଥଣ୍ଡା ହେଇଯାଏ ! ◻





# ସୁରେଶ ଶୀଘ୍ର ଚାଲିଗଲା

ଗୌରାଙ୍ଗ ଚରଣ ପରିଡ଼ା

ସୁରେଶ, (ସୁରେଶ ବଳବନ୍ତରାୟ) ଥିଲା ମୋର ଶ୍ରେଣୀ ସାଂଗ । ଆମେ କିନ୍ତୁ ଏକା ସ୍କୁଲରେ ପଢୁନଥିଲୁ । ମୁଁ ଡେଲାଙ୍ଗ ମହତାବ ସ୍କୁଲରେ ପଢୁଥିଲି । ସେ ନରଣଗଡ଼ରେ । ଆମେ ଦୁଇଜଣ ଚିହ୍ନା ହୋଇଥିଲୁ ମହତାବ ହାଇସ୍କୁଲରେ । ସୁରେଶର ବଡ଼ ଭାଇ ଥିଲେ ବୀର ସାର୍ । ବୀର ସାର୍ ମହତାବ ହାଇସ୍କୁଲର ଶିକ୍ଷକ ଥିଲେ । ମୋର ପ୍ରିୟ ଶିକ୍ଷକ । ସୁରେଶ ବୀର ସାର୍‌ଙ୍କ ପାଖକୁ ଆସିଲେ ହଷ୍ଟେଲରେ ମୋ ରୁମ୍‌କୁ ଆସେ । କଥା ହେଉ । ବନ୍ଧୁତା ବଢ଼ିଥିଲା ।

୧୯୭୦ ମସିହାରେ ମାଟ୍ରିକ ପାଶ୍ କଲାପରେ (ଏକାଦଶ ଶ୍ରେଣୀ) ଆମେ ପୁଣି ପୁରୀ ଏସ୍.ସି.ଏସ୍ କଲେଜରେ ମିଶିଲୁ । ସେ ବିଜ୍ଞାନ ପଢୁଥିଲା । ମୁଁ ଆର୍ଟସ ଛାତ୍ର ଥିଲି । ଦୁହେଁ ହଷ୍ଟେଲରେ ରହୁଥିଲୁ ।

କଲେଜ ଜୀବନରେ ବି ସୁରେଶର ଲେଖାଲେଖିରେ ଦକ୍ଷତା ଥିଲା । କବିତା, ଗଳ୍ପ, ପ୍ରବନ୍ଧ, ନାଟକ ସେ ଲେଖୁଥିଲା । ଚିତ୍ର ଆଙ୍କୁଥିଲା । ନାଟକର ନିର୍ଦ୍ଦେଶନା ଦେଉଥିଲା । ମନେ ପଡୁଛି, ହଷ୍ଟେଲର ବାର୍ଷିକ ଉତ୍ସବରେ ହୋଇଥିବା 'ଅଜାତଶତ୍ରୁ' ନାଟକର ସେ ନିର୍ଦ୍ଦେଶକ ଥିଲା ।

ବେଶ୍ ରୋମାଣ୍ଟିକ୍ ଥିଲା ସୁରେଶ । ସବୁ କବି, ଚିତ୍ରକର ଯେମିତି ଆଶାବାଦୀ, ରୋମାଣ୍ଟିକ୍ ଥାଆନ୍ତି, ଠିକ୍ ସେମିତି । ରୋମାଣ୍ଟିସିଜିମ୍ ତା'ପାଇଁ ଥିଲା ଏକ ସଂସ୍କୃତି । ସେ କଳା, ସାହିତ୍ୟ ହେଉ ବା ମାନବବାଦ...।

ଚାକିରି ଜୀବନରେ ଖୁବ୍ କମ ଥର ଦେଖା ହୋଇଛି ସୁରେଶ ସହ । ଫୋନ୍‌ରେ କିନ୍ତୁ ଅନେକ ଥର କଥା ହୋଇଛୁ । ସେ କଷ୍ଟମରେ ଚାକିରି କରୁଥିଲା । ମୁଁ ଏ.ଜି.ରେ । ଥରେ ଭୁବନେଶ୍ୱରର ବିମାନ ବନ୍ଦରରେ ସୁରେଶ ସହ ମୋର ଦେଖାହେଲା ବେଳେ ସେ କହିଥିଲା– ସେ ଓଡ଼ିଆ ଲୋକ ସାହିତ୍ୟ ଉପରେ ଗବେଷଣା କରୁଛି । ସେଥିପାଇଁ ଜାତୀୟ ପ୍ରୋଜେକ୍ଟଟିଏ ପାଇଛି । ମୁଁ ସେଦିନ ମୋର ସାଂଗଠନିକ କାର୍ଯ୍ୟରେ ଦିଲ୍ଲୀ ଯାଉଥିଲି । ସେ ହିମାଚଳ ପ୍ରଦେଶ ଯାଉଥିଲା ।

ସୁରେଶ ଦେହାନ୍ତର ଅଳ୍ପଦିନ ପୂର୍ବରୁ ତା ସହ ଦେଖା ହୋଇଥିଲା ତା ନିଜ ଘରେ, ଭୁବନେଶ୍ୱରରେ । ଭୁବନେଶ୍ୱରରେ ସେଦିନ ପ୍ରବଳ ଖରା ହେଉଥିଲା । ମୁଁ ଆଉ ମୋ ସ୍ତ୍ରୀ ଏକ ବିଶେଷ କାର୍ଯ୍ୟରେ ତା ଘରକୁ ଯାଉଥିଲୁ । ତା ଘରପାଖ ଛକକୁ ଆସି ସେ ଆମକୁ ତା ଘରକୁ ନେଇଯାଇଥିଲା ।

ସେଦିନ ବେଶ୍ ଆତିଥ୍ୟ ଦେଇଥିଲା ସୁରେଶ । ପିଲାବେଳର ଅନେକ କଥା ମନେ ପକେଇଥିଲୁ । ସେଦିନ ସେ ମୋତେ ଚଉଷଠି ଯୋଗିନୀ ଏବଂ ପାଇକ ଯୁଦ୍ଧକଳା ଉପରେ ଲେଖିଥିବା ଦୁଇଖଣ୍ଡି ବହି ଦେଇଥିଲା । ଯଦିଓ ଆମର ବୟସ ବଢ଼ିଥିଲା, ଆତ୍ମୀୟତା କମି ନଥିଲା ।

ଘରେ ତା'ର ଭଲ କଣ୍ଢେଇ ମ୍ୟୁଜିୟମଟିଏ କରିଥିଲା ସୁରେଶ । ଭାବୁଛି, ସେ ମ୍ୟୁଜିୟମ୍ ଏବେ ନିଶ୍ଚୟ ଥିବ । ସୁନ୍ଦର ଭିନ୍ନ ଭିନ୍ନ କଣ୍ଢେଇ ଆଲମିରାରେ ସଜେଇ ରଖା ଯାଇଥିଲା । ଦେଶ ବିଦେଶରୁ ଏ କଣ୍ଢେଇ ସେ ସଂଗ୍ରହ କରିଥିଲା । ସୁରେଶ କହୁଥିଲା– ସଂଧ୍ୟାରେ ଆଲୁଅ ଲିଭେଇ କଣ୍ଢେଇ ଘରେ ତା'ର ଚୁପ୍ ହୋଇ ବସି ରହିଲେ, କଣ୍ଢେଇମାନେ ପରସ୍ପର ସହ କଥା ହେବାଟା ଶୁଭେ । ଶ୍ରଦ୍ଧା ଥିଲେ ବସ୍ତୁ ବି ଜୀବନ୍ତ ହୋଇଯାଏ ।

ଘର ଆଗରେ ସେ ସୁନ୍ଦର ବଗିଚାଟିଏ କରିଥିଲା । ବିଭିନ୍ନ ପ୍ରକାରର ଫୁଲ ଗଛ । ସେଥିରେ ବ୍ରହ୍ମକମଳ ଗଛ ଥିଲା । ଘରୁ ତା'ର ଫେରିଲାବେଳେ ସେ ଆମକୁ ବ୍ରହ୍ମକମଳର ପତ୍ରଟିଏ ଦେଇଥିଲା । କୁଣ୍ଡଆରେ ଲଗେଇଦେଲେ ସେଥିରୁ ଗଛ ହେବ ବୋଲି କହିଥିଲା । ମୁଁ ମୋ ପୁରୀ ଘର ବାଡ଼ିରେ ସେଇ ବ୍ରହ୍ମକମଳ ପତ୍ର ଲଗେଇଥିଲି । ଅଳ୍ପ ଦିନରେ ଗଛ ହୋଇଯାଇଥିଲା ।

ସୁରେଶର ଦେହାନ୍ତ ଖବର ଶୁଣିଲି ଟିଭିରୁ । ଟିଭିରେ ସ୍କ୍ରୋଲ ଚାଲୁଥିଲା ବିଶିଷ୍ଟ ଲେଖକ ସୁରେଶ ବଳବନ୍ତରାୟଙ୍କ ଦେହାନ୍ତ ।

ଦୁଃଖ ହେଲା । ଭାବିଲି, ସୁରେଶ ଏତେ ଶୀଘ୍ର ଚାଲିଗଲା କାହିଁକି ? ବହୁତ କାମ ବାକି ପଡ଼ିଛି ତା'ର । କବିତା ଲେଖା, ଚିତ୍ର ଅଙ୍କା, ଗବେଷଣା, ସବୁ ଅଧାରେ ଅଛି । କଣ୍ଢେଇ ସଂଗ୍ରହ ବି ଶେଷ ହୋଇନି । ମୋ ପୁସ୍ତକ ଉନ୍ମୋଚନ ଉତ୍ସବ ପାଇଁ ପୁରୀ ଆସିବାକୁ ସେ ମୋତେ କଥା ଦେଇଥିଲା ।

ମହାକାଳ ବହୁତ ନିଷ୍ଠୁର । ସେଇଥିପାଇଁ ତାକୁ ଏତେ ଭୟ ବୋଧେ ।

ସୁରେଶ ଚାଲିଯିବାର ଅଳ୍ପଦିନ ପରେ ମୋ ବାଡ଼ିରେ ବ୍ରହ୍ମକମଳ ଫୁଲ ଫୁଟିଥିଲା । ବଡ଼ ଏକ ଧଳା ଫୁଲ । ଲମ୍ବା ନାଡ଼ । ମୁଁ ସିଦ୍ଧମହାବୀରଙ୍କୁ ସେ ଫୁଲ ଲାଗିକରିଦେଲି । ବ୍ରହ୍ମ କମଳ ଫୁଲ ଦେଖି ମହାବୀରଙ୍କ ପୂଜକ ଖୁବ୍ ଖୁସି ହୋଇଯାଇଥିଲେ । ବ୍ରହ୍ମ କମଳ ଦେବଲାଗି ଫୁଲ ।

ସେ ବ୍ରହ୍ମକମଳ ଗଛ ଏବେ ବି ମୋ ବଗିଚାରେ ଅଛି । ଫୁଲ କିନ୍ତୁ ଆଉ ଫୁଟୁନି... କିନ୍ତୁ ସୁରେଶର ସ୍ମୃତି ମନେପକାଉଛି ।

ମୃତ୍ୟୁ ବେଳକୁ ସୁରେଶ ବଳବନ୍ତରାୟ ଏକ ନାଁ ହୋଇ ନଥିଲା । ସେ ଅନୁଷ୍ଠାନଟିଏ ହୋଇଯାଇଥିଲା । ସେ ଅନୁଷ୍ଠାନ ଏବେ ମଧ୍ୟ ବଂଚିଛି । ସୁରେଶ ବଳବନ୍ତରାୟ ଫାଉଣ୍ଡେସନ ଏହାକୁ ବଂଚେଇ ରଖିଛନ୍ତି । ଅନ୍ୟା ଅନୁରୂପାକୁ ଧନ୍ୟବାଦ ।

ସର୍ବୋଦୟ ନଗର, ପୁରୀ-୨
ମୋ ୯୮୬୧୪୬୯୩୨୮





# ସୁରେଶ, ଏକ ମିଠା ସ୍ୱପ୍ନ

ସୁକୁବିନା (ଜାପାନୀ)

ସୁରେଶ ଗୋଟିଏ ସ୍ୱପ୍ନ। ସ୍ୱପ୍ନ ମନେ ରଖେନା କେବେ ଆସିଥିଲା। ସେ ସ୍ୱପ୍ନ ପ୍ରଥମେ କେବେ ବନ୍ଧୁ ମହଲରେ ଲିଙ୍ଗରାଜ ଷ୍ଟେସନର ବରଗଛ ମୂଳରେ ଉଭା ହେଲା । ତା'ପରେ ଆମ ପୋର୍ଟିକୋ ଉପରେ। ଦେଖାଇଲା ସେ ଆହୁରି ସ୍ୱପ୍ନ - ସ୍ୱପ୍ନରେ କରିଥିଲା ମୋତେ ଆତ୍ମହରା। ଭରି ଦେଇଥିଲା ରଂଗୀନ୍ ସ୍ୱପ୍ନର ସଂସାର ଆମ ସାମ୍ନାରେ- କେତେ ନୂଆ ରୂପରେ ତା' ସୃଷ୍ଟିର ସୌରଭରେ, ତା' ହୃଦୟବତ୍ତାର ମହକରେ ବୁଡି ରହିଲୁ ଆମେ ସ୍ୱପ୍ନ ରାଜ୍ୟରେ। ସେ ସ୍ୱପ୍ନରାଜ୍ୟରେ ତା' କବିତା, ତା' ଚିତ୍ରକଳା, ଗଳ୍ପ, ଆଲେଖରେ ସ୍ୱପ୍ନାଭିଭୂତ ହୋଇଥିଲି, ଖାଲି ମୁଁ ନୁହେଁ ଆମେ ସମସ୍ତେ ମିଶି ଯେଉଁ ସ୍ୱପ୍ନ ଦେଖୁଥିଲୁ ପ୍ରତି ରବିବାର ଆମ ପୋର୍ଟିକୋ ଉପରେ, ଖାଇବା ଘରେ। ସେମାନଙ୍କ ଭିତରୁ ସ୍ୱର୍ଗଦେଶକୁ ଚାଲିଗଲେଣି ଅର୍ଦ୍ଧାଧିକ- ବାସୁଦେବ ସାହୁ, ଦିନନାଥ ପାଠୀ, ସୌରୀନ୍ଦ୍ର ବାରିକ, ଅସୀମ ବସୁ - ଆଉ ସେଇ ତା'ର ସ୍ୱପ୍ନ ସାକାର କରିବା ପାଇଁ ରହିଁ ବସିଛୁ ଆମେ ବିଜୟ ମହାନ୍ତି, ପ୍ରଫୁଲ୍ଲ ଧୀର, ରାମହରି ଜେନା, ଅସିତ ମହାନ୍ତି, ଦାଶ ବେନହୁର - ସ୍ୱପ୍ନବେଷ୍ଟିତ ଜଣା ଅଜଣା ସବୁ ବାନ୍ଧି ହୋଇଯାଇଥିଲେ ସୁରେଶର ସ୍ୱପ୍ନରେ।

ସୁରେଶ ସ୍ୱପ୍ନରେ ଦେଖାଇଥିଲା ଅପୂର୍ବ ଚିତ୍ରକଳା, ଗଳ୍ପ, କବିତା, ମନ୍ଦିର ନାଟଗୀତର ଆଲେଖ୍ୟ। ଭୁବନେଶ୍ୱର ମନ୍ଦିରମାନଙ୍କର ଇତିହାସ କିମ୍ବଦନ୍ତୀ ଏକ ଚମତ୍କାର ଆଲେଖ ସେ କରିଥିଲା ଯେଉଁ ପୃଷ୍ଠଭୂମି ତାକୁ ଆଶ୍ରୟ କରି ମୋ ଝିଅ ପୂରବୀ ଲେଖିଥିଲା ଇଂରାଜୀରେ 'ଟାଇମ୍ସ ଅଫ୍ ଇଣ୍ଡିଆ' ପାଇଁ। ଚଉଷଠୀ ଯୋଗିନୀର ସ୍ୱପ୍ନରେ ସୃଷ୍ଟି କରିଥିଲା ପ୍ରତ୍ୟେକ ଯୋଗିନୀଙ୍କ ଗହଣା, ମୁଣ୍ଡର ଜୁଡ଼ାର ଚିତ୍ର ଆଉ ଇତିହାସ ସହ ଲେଖିଥିଲା ଇଂରାଜୀ ଓ ଓଡ଼ିଆରେ ବହି - ବହିସବୁ ଦିଲ୍ଲୀ 'ଇନଟାକ୍' ଲାଇବ୍ରେରୀରେ ସ୍ୱପ୍ନ ଜଗାଉଥିଲା। 'ଇନଟାକ୍' ଚେୟାରମେନ୍ଙ୍କ ସହିତ- ବହୁ ଇତିହାସ ଖୋଜିବା ମଣିଷ ସ୍ୱପ୍ନ ଦେଖିଲେ ଏହାରି ମାଧ୍ୟମରେ।

ଆମ ଖାଇବା ଟେବୁଲ୍‌ରୁ ବନ୍ଧୁମାନଙ୍କୁ ବାନ୍ଧିରଖିବାର ସ୍ୱପ୍ନ ଗଢ଼ିଯାଇଥିଲା। ବସ୍‌ଷ୍ଟାଣ୍ଡ ପାଖରେ ସଂଧ୍ୟା ବନ୍ଧୁମିଳନକୁ- ସେଇ ସ୍ୱପ୍ନରେ ମୁଗ୍ଧ ହୋଇ ଆମେ ଆରମ୍ଭ କଲୁ 'କଫି ହାଉସ୍ କର୍ଣ୍ଣର'। ଏମିତି ସମସ୍ତଙ୍କୁ ବାନ୍ଧି ରଖିବାର ସ୍ୱପ୍ନ ସେ ସମସ୍ତଙ୍କୁ ବାଣ୍ଟି ଦେଇଥିଲା।

କିନ୍ତୁ ହଠାତ୍ ସେ ସ୍ୱପ୍ନ ଭାଙ୍ଗିଗଲା।

ଆମେରିକାରେ ଆମେ ପୁଅ ପାଖରେ ବନ୍ଧୁ ପ୍ରଫୁଲ୍ଲ ଧୀର ଫୋନ୍ କଲେ - ସୁରେଶ ସ୍ୱପ୍ନ ଭାଙ୍ଗିଗଲା।





# ସଦା ଆୟୁଷ୍ମାନ ସ୍ରଷ୍ଟା: ସୁରେଶ ବଳବନ୍ତରାୟ

ସତ୍ୟନାରାୟଣ ଗନ୍ତାୟତ

ନବେ ଦଶକରେ ରାୟଗଡ଼ାରେ କେନ୍ଦ୍ରୀୟ ଉତ୍ପାଦ ଶୁଳ୍କ ବିଭାଗରେ ସ୍ୱନାମଧନ୍ୟ ସୁରେଶ ବଳବନ୍ତରାୟ ଅବସ୍ଥାପିତ ହେବାବେଳକୁ ମୁଁ ତାଙ୍କୁ ଜାଣିଥିଲି ଜଣେ ସୁଖ୍ୟାତ କଥାକାର ଭାବରେ।

ଅଥଚ ଏବେ ?

ଏବେ ସେ ମୋ ଅନ୍ତରରେ ସମାହିତ ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ସଖା ସତୀର୍ଥ ସହୋଦରଠୁ ବଳି ଏକ ଏକାନ୍ତ ଓ ଅଭିନ୍ନ ହୃଦୟସତ୍ତା ହୋଇ। କ୍ୱଚିତ୍ ପରିଦୃଷ୍ଟ ହୁଅନ୍ତି ଏଭଳି ବ୍ୟକ୍ତିତ୍ୱ, ଯିଏ ନାଟକ ରଚିବାକୁ ଯାଇ ବଖାଣି ପାରନ୍ତି କି କି ଘଟନାଙ୍କ ଘନଘଟା ହୁଏ "ଜୋତା ଆବିଷ୍କାର ପରେ"। ସେ ଅଭିନୟ କରିପାରନ୍ତି, ନିର୍ଦ୍ଦେଶନା ଦେଇପାରନ୍ତି ଏବଂ ସର୍ବୋପରି ନାଟକର ବିବିଧ ବୈଦଗ୍ଧ୍ୟଆଧାରିତ ଖୋଜ୍ ଭିତରେ ଆପଣାର ଅମାପ ସୃଜନଶୀଳ ବିଦ୍‌ବତ୍ତାକୁ ନିଖୋଜ କରିପାରନ୍ତି ଏତେ ଟିକେ ନାନ୍ଦନିକ ଆନନ୍ଦ ଲୋଭରେ। ତାଙ୍କ ସଂସ୍ପର୍ଶରେ ଆସିଥିବା ଲୋକେ ତାଙ୍କ ଭିତରେ ସ୍ନେହକାଙ୍ଗାଳ ମଣିଷଟିଏର ମାଧୁର୍ଯ୍ୟ ଅନୁଭବିଥିବେ ସିନା ପ୍ରଶଂସାପ୍ରିୟ ଯଶଲିପ୍ସୁସୁଲଭ ଚତୁର୍ଯ୍ୟ କଦାପି ପାଇ ନଥିବେ। ନାଟ୍ୟ ରଚନା, ବିବିଧ ନାଟ୍ୟରୂପର ସଂରଚନା ଓ ସଂପ୍ରସାରଣ ତଥା ସାମଗ୍ରିକ ଭାବେ ଜଣେ ନାଟ୍ୟଖୋରର ଜୀବନ ଜିଇଁ ଆସୁଥିଲେ ସୁରେଶ ବଳବନ୍ତରାୟ।

ଏଠି ଥେରୁବାଲିରେ ଥିବାବେଳେ ସେ ଏକକ ଓ ବ୍ୟକ୍ତିଗତ ଉଦ୍ୟମରେ ଆୟୋଜନ କରିଥିବା ଗ୍ରୁପ୍ ଥିଏଟର ଏକାଡ଼େମୀର ଦିନିକିଆ ନାଟ୍ୟ କର୍ମଶାଳା ଏବେ ବି ସବୁରି ସ୍ମୃତିରେ ରହିଛି ସଦା ଭାସ୍ୱର ହୋଇ। ଏ ଅକିଞ୍ଚନ ଭିତରେ ସେ କ'ଣ ଠାବ କରିଥିଲେ କେଜାଣି ସେଇ କର୍ମଶାଳାରେ "ନାଟକ ଦର୍ଶକେ ଯାହା ଚାହାନ୍ତି" ଶୀର୍ଷକ ବିଷୟରେ ଅନ୍ତିମ ଉଦ୍‌ଯାପନୀ ବକ୍ତବ୍ୟ ପ୍ରଦାନ କରିବାର ସୁଯୋଗ ଦେଇଥିଲେ। ଏହି ଦାୟିତ୍ୱ କିନ୍ତୁ ତାଙ୍କୁ ସୁମରି ଓ ତାଙ୍କ ସହ ବିଭିନ୍ନ ସମୟର ଆଳାପକୁ ହିଁ ମୂଳ ଉପାଦାନ ଭାବେ ନେଇ ଏ ଅକିଞ୍ଚନ ପାଳନ କରିଥିଲା ଓ ସବୁରି ପ୍ରିୟ ଭାଜନ ହୋଇପାରିଥିଲା।

ସେ ଏଭଳି ଭାବଦୋଷ୍ଟିରେ ମଗ୍ନ ହୋଇ ପାରନ୍ତି ଯେ ସାମାନ୍ୟ ମନେ ହେଉଥିବା କିସମ କିସମର ହରରଙ୍ଗୀ କଣ୍ଢେଇକୁ ନେଇ ସଚିତ୍ର ସୁରମ୍ୟ ସୁଶୋଭିତ କଣ୍ଢେଇ ଘରଟିଏର ପରିକଳ୍ପନା ଓ ରୂପାୟନ କରିପାରନ୍ତି। ଥରେ ତାଙ୍କ ଚିତ୍ରକଳା ପ୍ରଦର୍ଶନୀ ଓ କଣ୍ଢେଇ ବିଷୟକ ପ୍ରକାଶନ ଓ ପ୍ରଦର୍ଶନରେ ଯୋଗ ଦେଇ ଚକିତ ହୋଇଛି। ପ୍ରହ୍ଲାଦ ନାଟକକୁ ନେଇ ହେଉ କି ଚୌଷଠି ଯୋଗିନୀ ମନ୍ଦିରକୁ ନେଇ ତାଙ୍କ ସୃଜନଶୀଳ ଗବେଷଣା ସଦା ଅନନ୍ୟ।

ଏତେ ବ୍ୟାପ୍ତ ତାଙ୍କ ସୃଜନଶୀଳ ବ୍ୟକ୍ତିତ୍ୱ, ଅଥଚ ଏଠି ଥିବାବେଳେ ଆମ ରାୟଗଡ଼ା ସାହିତ୍ୟ ସଂସଦର ଅନେକ କାର୍ଯ୍ୟକ୍ରମ ସେ ନିଜେ ନିଜ ଇଚ୍ଛାରେ ହାତକୁ ନେଇ ସକଳ ଦାୟିତ୍ୱ ନିର୍ବାହ କରିଛନ୍ତି। କେତେବେଳେ ସଂଯୋଜନା କରିଛନ୍ତି ତ କେତେବେଳେ ସମୀକ୍ଷା କରିଛନ୍ତି ତ ପୁଣି କେବେ ଅତି ଅଭାବିତ ଭାବେ ଅତିଥିମାନଙ୍କ ପାଇଁ ମାନପତ୍ର ଓ ଉପଢ୍ୱୌକନାଦି ସୁଦ୍ଧା ଗଢ଼ି ଦେଇଛନ୍ତି ଅମାପ ଶ୍ରଦ୍ଧାଭରା ଆବେଗରେ। ଏଭଳି ଦାୟିତ୍ୱମାନ ନିର୍ବାହ କରି ଜଣେ ସାର୍ଥକ ଅଗ୍ରଜ ଭାବେ ଉଭା ହୋଇଥିବା ଏହି ସ୍ରଷ୍ଟା ପୁରୁଷ ମନେ ହୁଅନ୍ତିନି ଯେ ସେ ଓକ୍ଷକ୍ଷଙ୍କଝଙ୍ଝଢଝରୟ ଡରରଳକ୍ଷଢ ଢ଼ଳ ଓଭୟସବ ରେ ଛଙ୍କସଛ ଗବଝଝରଢ ଥିଲେ, ସୁଖ୍ୟାତ ଉରଭକ୍ତଭବସଢ ପତ୍ରିକାରେ ଲେଖୁଥିଲେ।

ହଁ ସମୟ ସତରେ ବଳବାନ୍, ତା' ଆଗରେ ଆମର ଏଇ ସୁରେଶ ବଳବନ୍ତରାୟ ନାମଧେୟ ଅଗ୍ରଜ ଜଣକ ବି ସତରେ ଅସହାୟ ! ନା, ସମୟ ବି ସହିପାରେନି ବୋଲି ସେ ଟାଣିନିଏ ଭଲ ଲୋକମାନଙ୍କୁ, ଯେମିତି ଆଜକୁ ନ' ବର୍ଷ ତଳେ ଛଡ଼ାଇ ନେଇଥିଲା ମୋଠୁ ମୋ ସାନଭାଇ ଶିବପ୍ରସାଦକୁ, ଯା' ଲେଖାମାନ ପଢ଼ି ତାକୁ ବିଭିନ୍ନ ପତ୍ରିକାକୁ ପଠାଇବା ପାଇଁ ପ୍ରବର୍ତ୍ତାଇବା ସହ ତା' ଜୀବନର ପ୍ରଥମ ସାକ୍ଷାତ୍କାର ନେଇ "ସମୟ" ଖବରକାଗଜରେ ଛପାଇଥିଲେ ତା'ର ସଚ୍ଚା ଅଗ୍ରଜ ସୁରେଶ ବଳବନ୍ତରାୟ ଏବଂ ଏତିକି କରିଥିଲେ ବୋଲି ତ ମୋ ଭଳି ଅସହ୍ୟ ଦୁଃଖରେ ଭାଙ୍ଗି ପଡ଼ିଥିଲେ ସେ ଶିବକୁ ହରାଇ । ଭୁବନେଶ୍ୱରରେ ଶିବ ସ୍ମୃତି ସମାରୋହ ସୁରେଶ ଭାଇ ସଂଘଟନ କରିନଥିଲେ ତାହା ସମ୍ଭବ ହୋଇପାରି ନଥାନ୍ତା । ଭୁବନେଶ୍ୱର ବସଷ୍ଟାଣ୍ଡ କଫି କର୍ଣ୍ଣରର ବନ୍ଧୁମାନଙ୍କ ସହ ଜଣେ ଆଗୁଆ ସହଯୋଗୀ ଭାବେ ସେ ସ୍ମୃତିସଭା ଆୟୋଜନ କରିବା ସହ ଆପଣାର ଶୋକାର୍ତ୍ତ ହୃଦୟ ନିଗାଡ଼ି କବିତା ଲେଖିଥିଲେ 'ଅନୁପମ ଭାରତ'ରେ, ଶିବ ବିଷୟରେ !

ସୁରେଶ ବଳବନ୍ତରାୟ ଗୋଟାପଣେ ସ୍ରଷ୍ଟାଟିଏ ହିଁ ! ସେ ଏ ଧରା ଓ ଭୂମା ସହ ସମ୍ପର୍କିତ ହୋଇ ହିଁ ବଞ୍ଚୁଥିଲେ । ସୁତରାଂ ସ୍ୱାଭାବିକ ଭାବେ ତାଙ୍କ ଭିତରକୁ ଅନାୟାସେ ଆସିଯାଉଥିଲେ ଥେରୁବାଲିର ଅନାମଧେୟ ସରଳ ଆଦିମ ମଣିଷ ବିନବାଜୀ ହିକ୍କା, ଯିଏ ତାଙ୍କ ସୃଜନଶୀଳ ସତ୍ତାକୁ ଆମୂସ୍ତ କରିନେଇଥିଲା ବୋଲି ହିଁ ସେ ତା' ଭଳି ଚରିତ୍ରଟିକୁ ବି ଆୟୁଷ୍ମାନ କରିଯାଇଛନ୍ତି ନିଜ କାଳଜୟୀ କାବ୍ୟିକତା ଭିତରେ !!

ସୁତରାଂ ମୋ ଦୃଷ୍ଟିରେ ସଭିଙ୍କୁ ଆୟୁଷ୍ମାନ କରିଯାଇଥିବା ଏହି ସୁମହାନ ସ୍ରଷ୍ଟା ସୁରେଶ ବଳବନ୍ତରାୟ ସ୍ୱୟଂ ସଦା ଆୟୁଷ୍ମାନ ରହିଛନ୍ତି ଓ ରହିଥିବେ ମୋ ଭିତରେ ସୂକ୍ଷ୍ମାତିସୂକ୍ଷ୍ମ ଭାବରେ !! ❑

"ସୁହାସିତମ୍" କସ୍ତୁରୀ ନଗର, ରାୟଗଡ଼ା-୭୬୫୦୦୧
ମୋ - ୯୪୩୭୯୦୯୬୭୫





# ନରଣଗଡ଼ ମାଟିର ସୁପୁତ୍ର ସୁରେଶ

ଶକୁନ୍ତଳା ବଳିୟାରସିଂହ

ଖୋରଧା ସହରଠାରୁ ବେଶୀ ଦୂର ନୁହେଁ ନରଣଗଡ଼ ଗ୍ରାମ। ବ୍ରହ୍ମପୁର ରାସ୍ତାରେ ମଳିପଡ଼ା ଯାଏ ଯାଇ ସେଠାରୁ ପୂର୍ବଦିଗକୁ ପଡ଼ିଥିବା ପିଚୁରାସ୍ତାରେ ଦୂର ତିନି କିଲୋମିଟର ଗଲେ ମାଡ୍ରାସ-ହାଓଡ଼ା ରେଳବାହୀ ପଡ଼େ। ରେଳବାହୀ ଟପିଗଲେ ନରଣଗଡ଼ ଗ୍ରାମ। ନରଣଗଡ଼ ଉ.ପ୍ରା ସ୍କୁଲ ପ୍ରଧାନଶିକ୍ଷକ ଗୋଲକ ବିହାରୀ ବଳବନ୍ତରାୟଙ୍କର ଏକମାତ୍ର ପୁତ୍ର ସୁରେଶ। ବହୁତ ସାନ ଆମଠାରୁ। ଅତି ସାନ ସୁରେଶକୁ ପିତାଙ୍କ ହାତଧରି ସ୍କୁଲକୁ ଆସିବା ଦେଖିଛି।

ଗୋଲକ ସାର୍ ଥିଲେ ରାଜ୍ୟପାଳ ପୁରସ୍କାରପ୍ରାପ୍ତ ଶିକ୍ଷକ। ଶୃଙ୍ଖଳାର ଏକ ପ୍ରତୀକ। ସୁରେଶ ଏହି କ୍ରମରେ ପିତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବାଲ୍ୟକାଳରୁ ପଢ଼ାପଢ଼ି କରି ସ୍ୱବୌଦ୍ଧିକତାର ପରାକାଷ୍ଠା ଦେଖାଇଥିଲେ। ସୁରେଶ ଥିଲେ ଭଲ ଚିତ୍ରକର। ବହୁ କଳାତ୍ମକ ଦିଗ ପ୍ରତି ଥିଲା ତାଙ୍କର ଆଗ୍ରହ। ଭିଡ଼ିଓ ଚିତ୍ର ଉତ୍ତୋଳନ, ସୁନ୍ଦର ଚିତ୍ରଗୁଡ଼ିକୁ ଏକତ୍ର କରିବା, ଗ୍ରାମ୍ୟ ଜୀବନର ଅଧ୍ୟାତ୍ମ ପରିବେଶଗୁଡ଼ିକୁ ଲିପିବଦ୍ଧ କରିବା, ମନ୍ଦିର ସହ ପୁଷ୍କରିଣୀ, ଭଗ୍ନଦୁର୍ଗ, ଜୀର୍ଣ୍ଣ ଭୂଧର, ଉପର ପ୍ରାନ୍ତର ଇତ୍ୟାଦିର ଛବିକୁ ନେଇ ଗାଁର ରୂପକୁ ଦେଖାଇବାର ଅଭିଳାଷ ଥିଲା ସୁରେଶଙ୍କର। ଗାଁରେ ଯାହାକିଛି ଘଟଣା ଘଟିଲେ ତାହା ସୁରେଶ ଆଖିରୁ ବାଦ୍ ଯାଉନଥିଲା। ସୁରେଶ ଥିଲେ ଅବକାରୀ ବିଭାଗର ଉଚ୍ଚପଦସ୍ଥ ଅଧିକାରୀ, ଭାରତ ସରକାରଙ୍କ ଅଧୀନସ୍ଥ। ହେଲେ ଉତ୍କଳୀୟ ଗର୍ବ ଓ ଗୌରବମୟ ବସ୍ତୁଗୁଡ଼ିକ ପ୍ରତି ସେ ଥିଲେ ଆସକ୍ତ। ଯେପରି ହୀରାପୁର ଯୋଗିନୀ ମନ୍ଦିର (ଚଉଷଠି ଯୋଗିନୀ)। ଭୁବନେଶ୍ୱର ଭିତରେ ଓ ବାହାରେ ଥିବା ମନ୍ଦିର ସମୂହ ବିବିଧ ରାଜାମାନଙ୍କ ଶାସନକାଳରେ ଘଟିଥିବା ମୁଖ୍ୟ ଘଟଣାବଳୀ ଆଦିର ସେ ଗବେଷଣା ଓ ଅନୁଶୀଳନ କରିଥିଲେ।

ମନେହୁଏ ସୁରେଶ ଏକାଧାରରେ ଥିଲେ ଜଣେ ପ୍ରତ୍ନତତ୍ତ୍ୱବିତ୍, ଐତିହାସିକ, ଭୂଗୋଳବିତ୍, ସମାଜତତ୍ତ୍ୱବିତ୍। ନରଣଗଡ଼ ଗ୍ରାମର ଇତିହାସ କିପରି ସାରା ଓଡ଼ିଶାରେ ବ୍ୟାପ୍ତ ହେବ, ଗ୍ରାମବାସୀଙ୍କର ଖ୍ୟାତି ବିକଶିତ ହେବ, ଆର୍ଥିକ ଅବସ୍ଥା ବଦଳିବ, ସ୍କୁଲ ପରିବେଶ ଉନ୍ନତ ହେବ ଏସବୁ ଥିଲା ତାଙ୍କର ଚିନ୍ତା।

ସୁରେଶଙ୍କ ଜୀବନକାଳ ଥିଲା ଏକଦମ୍ ସୀମିତ। ସ୍ୱପ୍ନ ଥିଲା ଅସୁମାରୀ। ସ୍ୱପ୍ନ ସାକାର କରିବାକୁ ଆଉ ବେଳ ନଥିଲା। ବହୁତ ଶୀଘ୍ର ସୁରେଶ ଆମକୁ ଛାଡ଼ି ଚାଲିଗଲେ। ମଉଳିଗଲା ନରଣଗଡ଼ ଗାଁର ଯେତେ ସୁଖ ଅଭିଳାଷ।

ଆମ ଗାଁ ମାଟି ଧନ୍ୟ ହୋଇଥିଲା ସୁରେଶଙ୍କୁ କୋଳରେ ଧରି। ଏବେ ଗାଁର କୋଳ ଶୂନ୍ୟ ହୋଇଗଲା। ଗାଁର ଦୁର୍ଭାଗ୍ୟ। ସୁରେଶ ପରି ଆଉ ଜଣଙ୍କୁ ବି ଦେଖୁନାହିଁ ଗାଁରେ।

ସୁରେଶଙ୍କ ଆତ୍ମା ଅମର ରହିବ। ଗ୍ରାମବାସୀଙ୍କ ଶୁଭେଚ୍ଛା ରହିଛି ସୁରେଶଙ୍କ ପରିବାର ପ୍ରତି, କନ୍ୟା ପ୍ରତି ରହିଛି ଆଶୀର୍ବାଦ। ଜୟ ଜଗନ୍ନାଥ। ■

ତା.୧୫.୧୦.୨୦୧୯



# ସ୍ମୃତିରୁ ଖିଏ

## ପ୍ରଫେସର ଜଗନ୍ନାଥ କୁଅଁର

ସୁରେଶ ବଳବନ୍ତରାୟ ଜଣେ ଜଣାଶୁଣା ବ୍ୟକ୍ତି। ତାଙ୍କର ଜନ୍ମ ୧୯୫୪ରେ। ଛାତ୍ର ଅବସ୍ଥାରୁ ସେ ଜଣେ ଜିଜ୍ଞାସୁ ବ୍ୟକ୍ତି ଭାବରେ ପରିଚୟ ପ୍ରଦାନ କରିଥିଲେ ତାଙ୍କ ଭାବ ଏବଂ ଭାଷାରୁ। ଚାକିରି କରିଥିଲେ ଅବସର ନେଇଥିଲେ। ତଥାପି ସେ ଖୁବ୍ ପ୍ରଫୁଲ୍ଲିତ ଥିଲେ। ସୁନ୍ଦର କଥା, ସୁନ୍ଦର ବ୍ୟବହାର ତାଙ୍କୁ ସମସ୍ତଙ୍କ ପାଖରେ ଅତି ନିଜର କରିଥାଏ। ମୋର ପରିଚୟ ହୁଏ ଏକ ପୁସ୍ତକର ଅନୁବାଦ ପାଇଁ। ପୁରୁଣା ବସ୍‌ଷ୍ଟାଣ୍ଡ କତିପୟ ଲେଖକ, ଗବେଷକ ତଥା ସଂଗୀତ ଶିଳ୍ପୀମାନଙ୍କର ଆଡ୍ଡାସ୍ଥଳୀ। ମୋ ଲିଖିତ ମର୍ଦ୍ଦଳ ବିଜ୍ଞାନଟିକୁ ଇଂରାଜୀରେ ଅନୁବାଦ ପାଇଁ ଡ. ଅଜୟ ସ୍ୱାଇଁଙ୍କ ସହିତ କଥୋପକଥନ ହେଉଥାଏ। ଅଜୟ ଭାଇ ଗଲା ପରେ ସୁରେଶ ଭାଇ (ବଳବନ୍ତରାୟ) ମୋତେ ପଚାରୁଛନ୍ତି ଯେ ଆପଣ କ'ଣ କରୁଛନ୍ତି ? ଉତ୍ତର ଥିଲା ମୋର– ପ୍ରଥମ ବାଦ୍ୟ ପୁସ୍ତକଟିକୁ ଇଂରାଜୀ, ହିନ୍ଦୀ ଓ ବଙ୍ଗଳାରେ ଅନୁବାଦ କରିବି। ସୁରେଶ ଭାଇ କହିଲେ– ଅଜୟ ସମସ୍ତ ବ୍ୟବସ୍ଥା କରିବ, ନହେଲେ ଦେଖିବା। ଏହିପରି ତାଙ୍କର ମୋର ଘନିଷ୍ଠତା ବଢ଼ିଲା। ପୁଣି ଅତି ଘନିଷ୍ଠ ହେଲୁ ଯେ, ଆମେ ପୁରୁଣା ଭୁବନେଶ୍ୱରରେ ପାଖାପାଖି ରହିଛୁ। ଏହିପରି ସଂଗୀତ, ସାହିତ୍ୟ, ଗବେଷଣା ସମ୍ବନ୍ଧରେ କଥା ହେଲୁ। ହଠାତ୍ ଶୁଣିଲି କି ସୁରେଶ ଭାଇ ପଡ଼ିଗଲେ ଘରେ, ତା'ପରେ ଇହଲୀଳା ସମ୍ବରଣ କଲେ। ବିଚଳିତ, ଆଶ୍ଚର୍ଯ୍ୟ ହେଲି। ପ୍ରଭୁଙ୍କ ପାଖରେ ପ୍ରଣାମ କଲି ଅମର ଆତ୍ମାର ସଦ୍‌ଗତି ପାଇଁ।

ସୁରେଶ ଭାଇ ମେଳାପୀ ବ୍ୟକ୍ତି ତଥା ଜଣେ ଗାଳ୍ପିକ, ପ୍ରାବନ୍ଧିକ, ଗବେଷକ ତଥା ଉତ୍ତମ ଅନୁବାଦକ ଥିଲେ। ଲୋକ ସଂସ୍କୃତି, ଲୋକକଳା, ଲୋକନାଟକ ଓ ଖୋର୍ଦ୍ଧାର ରାମଲୀଳା ଉପରେ ସନ୍ଦର୍ଭ ଲେଖିଛନ୍ତି। ପ୍ରହଲ୍ଲାଦ ନାଟକ, ଲୋକନୃତ୍ୟ ଉପରେ ମଧ୍ୟ ତାଙ୍କର ବିଶେଷ ଜ୍ଞାନ ଥିଲା। ଲୋକନାଟିକା ଗବେଷଣା ପାଇଁ ଜାତୀୟ ବୃତ୍ତି ପାଇଥିଲେ। ତାଙ୍କର ଗଳ୍ପ, ପ୍ରବନ୍ଧ, ବିଭିନ୍ନ ସନ୍ଦର୍ଭ, ଅନୁବାଦ ବହୁଳ ଭାବେ ପ୍ରକାଶିତ। ସେ ଜଣେ ଦକ୍ଷ ସଂଗଠକ ତଥା ବହୁ ଅନୁଷ୍ଠାନ ସହିତ ଜଡ଼ିତ। ଚଉଷଠି ଯୋଗିନୀ ମହୋତ୍ସବର ଶୁଭାରମ୍ଭ କରିଥିଲେ ସେ। ସେ ଥିଲେ ଏକାଧାରରେ ବନ୍ଧୁବତ୍ସଳ, ମେଳାପୀ ଓ ପରୋପକାରୀ। ପାରମ୍ପରିକ କଣ୍ଢେଇର ସଂଗ୍ରହାଳୟ ଆରମ୍ଭ କରିଥିଲେ। ପ୍ରତ୍ୟେକ ଦିନ ପୁରୁଣା ବସ ଟର୍ମିନାଲ (ଏଜି ଛକ) ପାଖ ସନ୍ଧ୍ୟା ସମୟରେ ବହି ଦୋକାନ ପାଖରେ ଭିନ୍ନ ଭିନ୍ନ ପୁସ୍ତକ ଲେଉଟାଇବା ତାଙ୍କର ନିଶା ଥିଲା। ମୋର ସାକ୍ଷାତ ହେଲାବେଳେ ମୋତେ ଧରି ଦୋକାନ ପାଖକୁ ଆସନ୍ତି ଏବଂ ଚା' ପିଇବା ସମୟରେ ଓଡ଼ିଶାର ପରମ୍ପରା ଏବଂ ସଂସ୍କୃତି ସମ୍ବନ୍ଧରେ ବିଭିନ୍ନ କଥା କହନ୍ତି। କଥା କଥାରେ ତାଙ୍କର ଜାଣିବାର ଏତେ ଆଗ୍ରହ ଥାଏ ଯେ ତାହା ବର୍ଣ୍ଣନା କରିହୁଏନା। ତାଙ୍କ ଆଲୋଚନାରେ ଥାଏ ପୁସ୍ତକ ସନ୍ନିବେଶିତ ବିଦ୍ୟା, ଓଡ଼ିଶାର ସଂସ୍କୃତି, ଗୀତ ନୃତ୍ୟ, ବାଦ୍ୟ ତଥା ସାହିତ୍ୟ କଥା। ନଥାଏ କାହା ସମ୍ବନ୍ଧରେ ସମାଲୋଚନା। ସେ ଜଣେ ଉଚ୍ଚମାନର ସମାଲୋଚକ ଯାହାର ଚିନ୍ତାଧାରାର ଥାଏ ସକରାତ୍ମକ ଭାବନା। ସୁରେଶ ବଳବନ୍ତରାୟ ଥିଲେ ପ୍ରାଚୀନ ଓ ପରମ୍ପରା ତଥା ପୁରୋଦୃଷ୍ଟିରେ ସମନ୍ୱିତ ବାସ୍ନା। ମଞ୍ଚରୁ ମନ୍ଦିର, କବିତାରୁ ଚିତ୍ରକଳା, ମୃତ୍ୟୁରୁ ମୁଖା, ଦେହରୁ ଦେଉଳ, ଭୂମିରୁ ଭୂମା ପର୍ଯ୍ୟନ୍ତ ତାଙ୍କର ସୃଜନ ଯାତ୍ରା ପ୍ରଲମ୍ବିତ।

ଏତିକି କହିବି– ସୁରେଶ ଭାଇଙ୍କ ମୋ ପ୍ରତି ଅନାବିଳ ସ୍ନେହ, ଆଗକୁ ଯିବାର ପ୍ରେରଣା, ସକରାତ୍ମକ ଚିନ୍ତାଧାରା ମୋତେ ଖୁବ୍ ଉଦ୍‌ବୁଦ୍ଧ କରିଛି। ତାଙ୍କର କଥା, ଚାଲି, ସ୍ୱଭାବ, ନମ୍ର ଆଚରଣ ବାବଦରେ କହିବା ନିଷ୍ପ୍ରୟୋଜନ। ଆଶା କରୁଛି, ପ୍ରଭୁ ଶ୍ରୀଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା କରୁଛି ଯେ ଇହଧାମରେ ଥାଇ ସେ ଗବେଷଣା ଜାରି ରଖିଥାନ୍ତୁ ପୁଣି ଆସ୍ମମାନଙ୍କୁ ପ୍ରେରଣା ଯୋଗାଉଥାନ୍ତୁ। ◘

ଉତ୍କଳ ସଂସ୍କୃତି ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର
ମୋ - ୯୪୩୭୨୨୮୧୬୯



# କାହିଁଗଲ ହେ ଯୋଗିନୀର ଯୋଗୀ

ଅନ୍ୟା ଅନୁରୂପା

କାହିଁଗଲ ହେ ଯୋଗିନୀର ଯୋଗୀ,
ଝରାଏ ଲୁହ ତୁମ ଯୋଗିନୀ ବସି ।

ନାହିଁ ଆଜି ତା'ର ପାଶେ
ତା'ର ରୂପକାର ।
ନା ଅଛି ଶିଳ୍ପୀ- ଦେଇଥିଲା ଯେ ପଥରକୁ ଫୁଟାଇ ରୂପ....
ନା ଅଛ ତୁମେ,
ଦେଇଥିଲା ଯେ ଦିନେ
ଶବ୍ଦର ବର୍ଣ୍ଣରେ ତାଙ୍କୁ "ଚଉଷଠି ଯୋଗିନୀ''ର ପରିଚୟ

ଆଜି ବି ଖୋଜି ବସେ ଯୋଗିନୀ ତୁମର
ରାତ୍ରିର ସେ ନିରବିତ ନିର୍ଜନ ପହରରେ
କିଏ ସେ ଶୁଣାଇ ଦେବ ଆଉ ଅଜଣା ଅଶୁଣା କାହାଣୀମାନ
ସଜେଇ ଦେବ କଲମ ମୁନରେ
ଅକ୍ଷରେ ପରେ ଅକ୍ଷର
ପୁଣି କେତେବେଳେ ଖୋଜି ବସିବ ଇତିହାସ ତା'ର
ଇତିହାସ ପୃଷ୍ଠାରେ



କିଏ ଆଙ୍କିବ ଆଜି ଆଉ ଚିତ୍ର ?
ପରସ୍ତ ପରସ୍ତ ସିନ୍ଦୂର ଧୂଳିକୁ ଛଡାଇ,
କିଏ ଆଉ ଅଧାଭଙ୍ଗା ହାତପାଦକୁ ଆଉଁସି
ଅନୁଭବିନେବ
କ୍ଷୟିତ ଏ ଯୋଗିନୀର ଯାତନାକୁ ହୃଦୟରେ ଜଡାଇ

ସତେ ଯଦି କାଗଜ ପରେ କାଗଜରେ
ଚିତ୍ରିତ ତୁମ ଯୋଗିନୀ
ପାଆନ୍ତି ଜୀବନ୍ୟାସ,
ଉଡିଯାନ୍ତେ କ୍ଷଣକରେ ବାହନରେ ବସି,
ଆଣନ୍ତେ ତୁମକୁ ଫେରାଇ ହେ ଯୋଗୀ
ପୁଣି ବଖାଣି ବସନ୍ତ ତୁମେ ତୁମ ଯୋଗିନୀର କଥା
ସଜାଇ ବସନ୍ତ ପୁଣି ତୁମେ ତୁମ ଯୋଗିନୀର ଗାଥା

କିନ୍ତୁ ନା,
ନା ତୁମ ଯୋଗିନୀ ପାଉଛି ଜୀବନ୍ୟାସ
ନା ତୁମେ ଲେଉଟି ଆସୁଛ
ନା ପୂରା ହୋଇ ପାରୁଛି
ଅଧାଲେଖା କାହାଣୀ ଏ ଯୋଗିନୀମାନଙ୍କର
ସେଥିପାଇଁ ବୋଧେ
ଖୋଜେ ଆଜି ତୁମକୁ ଯୋଗିନୀ ତୁମର-

ସତରେ କାହିଁଗଲ ହେ, ଯୋଗିନୀର ଯୋଗୀ
ଝରାଏ ଲୁହ ତୁମ ଯୋଗିନୀ ବସି ।



# ସୁରେଶ ଭାଇ....

ରୁନା ପଣ୍ଡା

ସୁରେଶ ଭାଇଙ୍କ ସହ ମୋର ଦେଖା ହୋଇଥିଲା ଏବଂ ସେ ଅତି ନିଜର ହୋଇ ଥିଲେ ୧୯୯୩ ମସିହାରୁ। ତାଙ୍କ ସହ ଦେଖା ହୋଇଥିଲାବେଳେ ମୁଁ ଜାଣିଥିଲି ସେ ସେଣ୍ଟ୍ରାଲ ଏକ୍ସାଇଜ୍‌ରେ ଚାକିରି କରନ୍ତି ଏବଂ ଖୁସିରେ ଚିତ୍ରକରନ୍ତି। କିନ୍ତୁ ମୁଁ ଜାଣି ନଥିଲି ସେ ଏକାଧାରରେ ଜଣେ କବି, ଲେଖକ, ଅନୁବାଦକ, ସଂଳାପକାର, ଗୀତିକାର, ନାଟ୍ୟକାର, କଣ୍ଢେଇ ସଂଗ୍ରାହକ।

ଯେତେବେଳେ ୨୦୦୦ ମସିହାରେ 'ନୃତ୍ୟପ୍ରତିଭା' ଅନୁଷ୍ଠାନ ଆରମ୍ଭ ହେଲା, ସେତେବେଳେ ସେ ଥିଲେ ଅନୁଷ୍ଠାନର ପ୍ରତିଷ୍ଠାତା ସଭାପତି ଏବଂ ଶେଷ ପର୍ଯ୍ୟନ୍ତ ଏହି ପଦ ସୁଚାରୁରୂପେ ତୁଲାଇ ଆସିଥିଲେ। ତାଙ୍କୁ ଧରି 'ନୃତ୍ୟପ୍ରତିଭା' ତା'ର ବାର୍ଷିକ ଉତ୍ସବ ରବୀନ୍ଦ୍ର ମଣ୍ଡପରେ ପ୍ରତି ବର୍ଷ ପାଳନ କରି ବର୍ଷୀୟାନ ଓଡିଶୀ ନୃତ୍ୟ ଗୁରୁମାନଙ୍କୁ ସମ୍ମାନିତ କରି ଆସୁଥିଲା ଏବଂ ପରେ ତାଙ୍କରି ପରିକଳ୍ପନା ଓ ଚିନ୍ତାଧାରାରେ ଆରମ୍ଭ ହୋଇଥିଲା ୨୦୦୭ରୁ 'ଚଉଷଠି ଯୋଗିନୀ ମହୋତ୍ସବ।'

ସେ ନୃତ୍ୟନାଟିକା ରଚନା କରିବାରେ ସିଦ୍ଧହସ୍ତ ଥିଲେ। ତାଙ୍କ ରଚନାରେ ବହୁ ନୃତ୍ୟ ନାଟିକା ଓଡିଶୀ ନୃତ୍ୟରେ ମଞ୍ଚସ୍ଥ ହୋଇଛି। ସେ ମଧ୍ୟରୁ ପ୍ରତିଭା ପଣ୍ଡାଙ୍କ ନିର୍ଦ୍ଦେଶନାରେ ସରସ୍ୱତୀ ବନ୍ଦନା, ପଞ୍ଚଭୂତ, ଚଉଷଠି ଯୋଗିନୀ, ନଟରାଜ ଋତୁରଙ୍ଗଶାଳା (ମୂଳ ରଚନା- ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର) ଦୟଣା ଫୁଲଚୋରୀ (କାହାଣୀ, ଗୌରୀ କୁମାର ବ୍ରହ୍ମା), ଗାନ୍ଧାରୀ କଥା (ଶାରଳା ମହାଭାରତ)-: ଏମିତି ବହୁତ କିଛି କାମ ହୋଇଥିଲା। ଯେପରି ଲାଗୁଥିଲା ସେ 'ନୃତ୍ୟ ପ୍ରତିଭା'ର ସଭାପତି ନୁହେଁ, ଆମ ପରିବାରର ଜଣେ ସଦସ୍ୟ। ଯାହା କାର୍ଯ୍ୟ କରିବାକୁ ପଡୁଥିଲା ପ୍ରଥମେ ସୁରେଶ ଭାଇଙ୍କ କଥା ମନେ ପଡିଯାଏ। ଏବେ ବି ସେୟା ହେଉଛି।

ଆଉ ଗୋଟିଏ ଆଶ୍ଚର୍ଯ୍ୟ କଥା ଜଣା ପଡିଲା ସେ ଯେବେ ଆମକୁ ଛାଡି ଚାଲିଗଲେ। ସମସ୍ତଙ୍କ ସଙ୍ଗେ ଦେଖା ହେଲା ପରେ ବହୁତ କଥା ଜାଣିଲି। ଆମେ ଯେପରି ତାଙ୍କୁ ଆମର ବୋଲି ଭାବୁଥିଲୁ ପ୍ରତ୍ୟେକ ଅନୁଷ୍ଠାନ ଏବଂ ମଣିଷ ତାଙ୍କୁ ନିଜର ବୋଲି ଭାବୁଥିଲେ। କାରଣ ସେ ସମସ୍ତଙ୍କ ପାଇଁ କାମ କରୁଥିଲେ। ତାଙ୍କ ପାଖରେ ଅସମ୍ଭବ ପ୍ରତିଭା ଥିଲା। ତାଙ୍କର ଗୋଟିଏ ଭଲ ଗୁଣ କି ଖରାପ ଗୁଣ ସେ କୌଣସି କାମ ପାଇଁ କାହାକୁ ମନା କରନ୍ତି ନାହିଁ।

ଏଭଳିଆ ମଣିଷ ଆମେ ଚାହିଁଲେ ବି ଏହି କଳିଯୁଗରେ ବେଶୀଦିନ ଭଗବାନ ରଖେଇଦେବେ ନାହିଁ। ସୁରେଶ ଭାଇଙ୍କର ଇଚ୍ଛା ଥିଲା ସେ ଅବସର ପରେ ବହୁକିଛି କାର୍ଯ୍ୟ କରିବ ଏବଂ ଚୌଷଠି ଯୋଗିନୀ ପୀଠର ଉନ୍ନତି ପାଇଁ ଏବଂ କଣ୍ଢେଇ ଘର କରିବାପାଇଁ। ତାଙ୍କର ସ୍ୱପ୍ନ ସାକାର କରିବାକୁ ଆମେମାନେ ଚେଷ୍ଟା କରୁଛୁ। ଏତିକି ଆମର ସ୍ୱପ୍ନ। ସେସବୁ ସ୍ୱପ୍ନ ନେଇ ଆମେ ଜିଇଁଛୁ ଓ ସୁରେଶ ଭାଇ ଆମମାନଙ୍କ ମେଳରେ ଅଛନ୍ତି।





# ସୁରେଶ ଭାଇ (ମାମୁ)

ଡ. ରଜନୀରଂଜନ

ପୁରୁଣା ବସ୍ତ୍ରାଣ୍ଡରେ ପବିତ୍ର ଚିହ୍ନାଇଦେଲା "ଇଏ ସୁରେଶ ଭାଇ।" ଗୀତ ଲେଖନ୍ତି, କବିତା ଲେଖନ୍ତି, ଗପ ବି ଲେଖନ୍ତି, ନାଟକରେ ବି ରୁଚି ରଖନ୍ତି। ସବୁଠୁ ବଡ଼ କଥା ହେଲା ଭଲ ଚିତ୍ର ବି ଆଙ୍କନ୍ତି। ଏସବୁ ପରିପୂର୍ଣ୍ଣ ବ୍ୟକ୍ତିତ୍ୱ ସହ ପୂର୍ଣ୍ଣ ପରିଚିତି ଆସିବାବେଳକୁ ସୁରେଶ ଭାଇ ବନିଯାଇଥିଲେ 'ମାମୁ'। ଯେହେତୁ ବନ୍ଧୁ ଅଜୟଙ୍କର ସେ ମାମୁଶ୍ୱଶୁର ହେବେ (ଦୂର ସଂପର୍କୀୟ ଅବଶ୍ୟ), ଆମ ସମସ୍ତଙ୍କର ପ୍ରିୟ ମାମୁ ସମ୍ବୋଧନରେ ସେ ଖୁସି ହେଉଥିଲେ।

ସଂପର୍କର ଆଉ ଗୋଟିଏ ମହତ୍ ଫର୍ଦ୍ଦ ଯୋଡ଼ି ହୋଇଗଲା ଯେତେବେଳେ ମହୋତ୍ସବ 'ଚଉଷଠି ଯୋଗିନୀ'ର ପରିକଳ୍ପନା ହେଲା। ଏବେ ବି ମନେଅଛି- ବସ୍ତ୍ରାଣ୍ଡ ଖଟିରେ ବନ୍ଧୁ ପୂର୍ଣ୍ଣଚନ୍ଦ୍ର ମହାରଣା, ରୁନା ପଣ୍ଡା, ଅଜୟ ଆଉ ମୁଁ ନିଷ୍ପତ୍ତି ନେଲୁ 'ଚଉଷଠି ଯୋଗିନୀ ମହୋତ୍ସବ' ହେବ ହୀରାପୁରରେ। ସଭାପତି ଥିଲେ ସୁରେଶ ଭାଇ, ଉପସଭାପତି ମୁଁ। ସଫଳତାର ସହ ଆଗେଇଚାଲିଲା ଉତ୍ସବ।

ମୋ କବିତା ବହି "ନୀଳସଂଜର ନଈ"ର ପ୍ରଚ୍ଛଦ ଆଙ୍କି ଦେଇଥିଲେ ସୁରେଶ ଭାଇ। ବିଜ୍ଞାନର ଛାତ୍ର ହୋଇ ବି ସାହିତ୍ୟ ଗବେଷଣାରେ ପ୍ରଗାଢ଼ ରୁଚି ଥିଲା ତାଙ୍କର। ବିଲୁପ୍ତ ଲୋକକଳାର ପୁନରୁଦ୍ଧାର ପାଇଁ ଅଦମ୍ୟ ନିଷ୍ଠା ଥିଲା ତାଙ୍କର।

ଏବେ ସୁରେଶ ଭାଇ ଖୁବ୍ ମନେପଡ଼ନ୍ତି। ଚଉଷଠି ଯୋଗିନୀ ମହୋତ୍ସବରେ, ସାହିତ୍ୟସଭାରେ , ବସ୍ତ୍ରାଣ୍ଡ ଖଟିରେ। ବଡ଼ ଅପ୍ରତ୍ୟାଶିତ ଥିଲା ତାଙ୍କର ବିୟୋଗ। କିଛି ଭଲ କଲେନି ସୁରେଶ ଭାଇ। ❖





# ସୁରେଶ ବଳବନ୍ତରାୟ: ଏକ ବିରଳ ବ୍ୟକ୍ତିତ୍ୱ

ଅଶୋକ ମହାନ୍ତି

ଜଣେ କେତେ ବର୍ଷ ଜୀବନ ଜୀଇଁଲେ ଯେତିକି ଗୁରୁତ୍ୱପୂର୍ଣ୍ଣ ନୁହେଁ କେତେ ବର୍ଷ ସଫଳ ଜୀବନ ଜୀଇଁଲେ ତାହା ହିଁ ଗୁରୁତ୍ୱପୂର୍ଣ୍ଣ। ସୁରେଶ ବଳବନ୍ତରାୟ (ସୁରନା') ବହୁତ ଗୁଡ଼ାଏ ବୟସ ଆବୁରୁଜାବୁରୁ ହୋଇ ବଞ୍ଚିବାକୁ ବୋଧେ ଚାହିଁ ନଥିଲେ, ତେଣୁ ୫୭-୫୮ ବୟସ ଭିତରେ ଓଡ଼ିଆ ସାହିତ୍ୟ ପାଇଁ, ଚିତ୍ରକଳା ପାଇଁ, ନାଟକ ପାଇଁ, ଗବେଷଣା ପାଇଁ ଅନେକ କିଛି କରିଯାଇଛନ୍ତି, ଯାହା ସ୍ୱଳ୍ପ କିନ୍ତୁ ସଫଳ ଜୀବନ ବୋଲି ଆମେ କହିପାରିବା।

ସୁରନା'ଙ୍କ ସାହିତ୍ୟ ମୋର ଘନିଷ୍ଠତା ମାମା ଅପା ପାଇଁ (ସୁରନା'ଙ୍କ ପତ୍ନୀ)। ପ୍ରାୟ ୧୯୮୯-୯୦ ମସିହାରୁ ତାଙ୍କ ସହ ବେଶ୍ ଭଲଭାବରେ ପରିଚିତ। ୧୯୯୦-୯୧ ବେଳକୁ ପାରାଦ୍ୱୀପରେ କଷ୍ଟମ୍ସ ଅଫିସର ଭାବେ ଥିଲାବେଳେ ତାଙ୍କ ପାଖକୁ ଅନେକଥର ଯାଇଛି। ତାଙ୍କର ଆତିଥେୟତା ଯେ କେତେ ଆପଣାର ମୁଁ ଅନୁଭବ କରିଛି। ପୋର୍ଟ ଓ ଜାହାଜ ଭିତରେ ବୁଲିବା, ତାଙ୍କ ପାଖରୁ ଫରେନ୍ ଗିଫ୍ଟ ଜବରଦସ୍ତି ଆଣିବା ମୋର ମୁଖ୍ୟ ଆକର୍ଷଣ ଥିଲା। ତାଙ୍କ ପାଖରେ ଆଜି ସାଧାରଣଠୁ ବିରଳ ଜିନିଷ ଯାଏଁ ସବୁ ଖୁବ୍ ସ୍ୱତନ୍ତ୍ର ଭାବେ ସଜା ହୋଇଥା'ନ୍ତି ତାଙ୍କ ବ୍ୟକ୍ତିଗତ ରୁମ୍‌ରେ ବା ଆଲମିରାରେ। ସେ ଦୃଶ୍ୟ ଯେ ନ ଦେଖିଛି ସେ ବିଶ୍ୱାସ କରିପାରିବନି।

'ପଶ୍ଚିମା' ସାହିତ୍ୟ ପତ୍ରିକା ୧୯୯୧ ମସିହାରେ ଆରମ୍ଭ ହେଲା ପରେ ପ୍ରାୟ ପ୍ରତ୍ୟେକ ସଂଖ୍ୟାରେ ତାଙ୍କର ଲେଖା ରହୁଥିଲା। ନାଟକ ହେଉ କି ପ୍ରବନ୍ଧ ହେଉ ବା ଚିତ୍ରକଳା ହେଉ ନିଶ୍ଚିତ କିଛି ନା କିଛି ରହୁଥିଲା। ସବୁଠୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ତାଙ୍କର ଲେଖା ଶୈଳୀ ଓ ଉପସ୍ଥାପନା ଅନନ୍ୟ। ସୁନ୍ଦର ଅକ୍ଷର, ସୁନ୍ଦର ସଜାରେ ଏ-ଫୋର୍ କାଗଜର ଗୋଟିଏ ପାଖରେ ଲେଖା ହୋଇଥାଏ ତାଙ୍କ ଲେଖା। ସାଇତି ରଖିଲା ଭଳି ତାଙ୍କର ହାତ ଲେଖା।।

ସୁରନା ଖୁବ୍ ବନ୍ଧୁବତ୍ସଳ। ସାଙ୍ଗ ମିଳିଗଲେ ସେ ଘର ଭୁଲିଯା'ନ୍ତି। ତାଙ୍କ ସହିତ ମୁଁ ଅନେକଥର ଆମ ଘରେ ବସିଛି, ତାଙ୍କର ଚିତ୍ର କରିବାର ଶୈଳୀକୁ ନେଇ ଆଲୋଚନା ହେଇଛି। ସେତେବେଳେ ଏକକ ଚିତ୍ରକଳା ପ୍ରଦର୍ଶନୀ ପାଇଁ ସେ ପ୍ରସ୍ତୁତି ହେଉଥାନ୍ତି। ବାସ୍ତବରେ ସେ ଜଣେ ଖୁବ୍ ନିଆରା ଚିତ୍ରଶିଳ୍ପୀ। 'କଣ୍ଢେଇ'କୁ ନେଇ ଅନେକ ଏକ୍ସପେରିମେଣ୍ଟ ସେ କରିଛନ୍ତି ଓ ସଫଳ ହେଇଛନ୍ତି ଯାହା ବୋଧହୁଏ କେହି କରିନାହାନ୍ତି।

ତାଙ୍କ ସହ ଯିଏ ପ୍ରଥମେ ମିଶିବ, ତାକୁ ଲାଗିବ ଫୁଲାଫାଙ୍କିଆ ଖିଆଲି ମଣିଷଟେ ଭଳି। ମାତ୍ର ସେ ଆଦୌ ସେମିତି ନଥିଲେ। ଥରେ ସ୍ଥିର କରିଦେଲେ କୌଣସି କାମରେ, ସେ ଆଉ ପଛକୁ ଫେରନ୍ତି ନାହିଁ, ଆମୂଳଚୂଳ ଏମିତି ଜଡ଼େଇ ନିଅନ୍ତି ଯେ ପାଠକ ବା ଦର୍ଶକ ଆଶ୍ଚର୍ଯ୍ୟ ହେବ ହିଁ ହେବ।

ଏଭଳି ବିରଳ ଓ କ୍ରିଏଟିଭ୍ ବ୍ୟକ୍ତିତ୍ୱ ଖୁବ୍ କମ୍ ଆସନ୍ତି ସଂସାରକୁ। 'ଚଉଷଠି ଯୋଗିନୀ' ଉପରେ ତାଙ୍କର ପୁସ୍ତକ ଓ ଆଲେଖ୍ୟ ଖୁବ୍ ଉପାଦେୟ ପାଠକ ଓ ଗବେଷକମାନଙ୍କ ପାଇଁ। ଅନ୍ୟଭାଷାର ଅନେକ କାଳଜୟୀ ନାଟକକୁ ଓଡ଼ିଆ ଅନୁବାଦ କରିଛନ୍ତି ସେ, ଯାହା ପରବର୍ତ୍ତୀ ସମୟରେ ରବୀନ୍ଦ୍ର ମଣ୍ଡପରେ ମଞ୍ଚସ୍ଥ ହେଇଛି।

ତାଙ୍କର ବହୁ ପ୍ରତିଭାକୁ ନେଇ ଯଦି କେହି କେବେ ଗବେଷଣା ବା ପିଏଚ୍‌ଡ଼ି କରନ୍ତା ତେବେ ପ୍ରକୃତରେ ତାଙ୍କର କୃତିତ୍ୱର ମୂଲ୍ୟାୟନ ହୋଇପାରନ୍ତା। ସୁରନା'ଙ୍କ ବ୍ୟକ୍ତିତ୍ୱର ମୂଲ୍ୟାୟନ କୃତିତ୍ୱର ବି ଜରୁରୀ। ❑

**ସଂପାଦକ, ପଶ୍ଚିମା**

**ଭୁବନେଶ୍ୱର**



# ସୁରେଶ ଭାଇ

ସମରେନ୍ଦ୍ରନାଥ ମହାପାତ୍ର

(ସ୍ୱର୍ଗତ ସୁରେଶ ବଳବନ୍ତ ରାୟ ଜଣେ କଳାପିପାସୁ କଳାକାର ଥିଲେ ଏବଂ ସମସ୍ତଙ୍କ ଭିତରେ ଥିବା କଳାତ୍ମକତା ବା ସୃଜନଶୀଳତାକୁ ସେ ଧରିନେଉଥିଲେ ଏବଂ ସେମାନଙ୍କୁ ସେଇଥିପାଇଁ ଉତ୍ସାହିତ କରୁଥିଲେ। ସେ ବହୁବାର ମୋତେ ମୋର କବିତା, ଗୀତ ରଚନା, ସମ୍ପାଦନା ଓ ସିନେମା ରୁଚିକୁ କେବଳ ତାରିଫ୍ କରୁ ନଥିଲେ, ବାରମ୍ବାର ଉତ୍ସାହିତ କରିଥିଲେ। ତାଙ୍କ ଭଳି ପ୍ରେରଣାବନ୍ତ ପୁରୁଷ ମୁଁ କମ୍ ଦେଖିଛି। ସେ ଏକ ବିରଳ ବ୍ୟକ୍ତିତ୍ୱ ଥିଲେ। ସେ ସାହିତ୍ୟ, କଳା, ସଙ୍ଗୀତ, ସିନେମା, ନାଟକ, ରଙ୍ଗମଞ୍ଚ ଓ ସଂସ୍କୃତିର ବିବିଧ ବିଭାଗରେ କେବଳ ରୁଚି ରଖି ନ ଥିଲେ, ପାରଦର୍ଶିତା ମଧ୍ୟ ଦେଖାଇପାରିଥିଲେ। ମଣିଷ ହିସାବରେ ଥିଲେ ଅମାୟିକ। ପିଲାଠାରୁ ବୁଢ଼ାଯାଏଁ ବୋଧହୁଏ ତାଙ୍କର ବନ୍ଧୁଙ୍କ ତାଲିକା ସୁବିସ୍ତୃତ ଥିଲା। ଆଉ ଦୁଇ ବର୍ଷ ତଳେ ତାଙ୍କର ଆକସ୍ମିକ ବିୟୋଗ ଆମ୍ଭମାନଙ୍କୁ ସମସ୍ତଙ୍କୁ ବିଷାଦଗ୍ରସ୍ତ କରିଥିଲା।

ମୁଁ ସେଦିନ ଭୁବନେଶ୍ୱରଠାରୁ ବହୁ ଦୂରରେ ଥିଲେ ମଧ୍ୟ ଶୋକାକୁଳ ପରିବେଶକୁ ନିଜ ଭିତରେ ପାଇଥିଲି ଏବଂ ସେଦିନ ସନ୍ଧ୍ୟାରେ ହିଁ ଲେଖିଥିଲି ଏଇ କବିତାଟି...)

ମନେ ଅଛିନା,
କେତେ ତାରିଖରେ ହବାର ଥିଲା ଫିଷ୍ଟ
ଚାନ୍ଦା ଆଦାୟ ତ ସରି ନ ଥିବ ତମର,
କେବେ ପୁଣି ଦେଖେଇବାର ଥିଲା ଆମକୁ
କଲିକତାର ପୁସ୍ତକମେଳା
ଅରବିନ୍ଦ ତ କାଟି ସାରିଥିଲା ଟିକେଟ୍
ଏ ଅବେଳରେ, ଆମ ସମସ୍ତଙ୍କୁ ଛାଡ଼ିଛୁଡ଼ି
ତମେ କୁଆଡ଼େ ଗଲ ସୁରେଶ ଭାଇ!

ତମର ତ ଯିବାର କିଛି ଯୋଜନା ନ ଥିଲା
ବିନା କାରଣରେ ନୋଟିସ୍ ନ ଦେଇ
ଖଟି ଛାଡ଼ିବା ତ ଠିକ୍ ହେଲାନାହିଁ!

ଏବେ କେମିତି ହବ ଫିଷ୍ଟ, କେମିତି ଯିବା
ପୁସ୍ତକମେଳା, କାହାକୁ ନେଇ
କିଏ ବଢ଼େଇଦବ ପାନ-ସିଗ୍ରେଟ୍-ଋ ତୁହାକୁ ତୁହା
କିଏ ବନେଇଦବ ପେଗ୍ ହସ ମିଶେଇ, ଲୁହ ଦେଇ, ସ୍ନେହ ମିଶେଇ
କେମିତି ଜମିବ ଖଟି, ତମେ ତ ନାହଁ ସୁରେଶ ଭାଇ!

ନ ହେଲା ନାହିଁ ଛାଡ଼ କବିତା ଫବିତା, ଗପ ଫପ
ଗାଉନ ଟିକେ ଖେୟାଲ୍ କି ଟପ୍ପା
ବଡ଼େ ଗୁଲାମ ଅଲ୍ଲୀ କି ପଙ୍କଜ୍ ଉଦାସ
ଆମେମାନେ ତ ପାଳି ଧରିବାକୁ ବଉଚୁ
ତୁମେ ଡେରି କରୁଚ କିଆଁ?

ଜୀବନରେ ବହୁତ ଦେଖିଚ ରଙ୍ଗ
ନାଲି ନେଳି ସବୁଜ ସବୁଜ
କେତେବେଳେ ସଫେଦ୍ କାନ୍‌ଭାସ୍ ଉପରେ
ଚିଂଚିଦେଇଚ ରଂଗ ଯେ ଝଲସି ଉଠିଚି ଆକାଶ
କେବେ ରୂପେଲି ପରଦା ତ କେବେ ମଂଚ
ନିଶା ତମକୁ ଘାରିଚି ବରାବର୍ କରିଚି ଘୁମ୍
"ଝୁମ୍ ବରାବର୍ ଝୁମ୍ ଶରାବୀ
ଝୁମ୍ ବରାବର୍ ଝୁମ୍

ଗାଆଣା ବାଜଣା ଭିତରେ ଥିଲା ତମ ଜୀବନ
ଆମ ପାଇଁ ଗୋଟେ ମୁଖଶାଳା,
ଆମେ ନାଟମଣ୍ଡପ ଆଡ଼କୁ ଯିବା ବେଳକୁ
ସରିଗଲା ମଙ୍ଗଳାଚରଣ ତମର, କିଏ ଜାଣିଥିଲା
ଭରା ମେହେଫିଲ୍ ଭିତରୁ ତମେ ନିଖୋଜ ହେଇଯିବ
ଆମେ ଚାହିଁ ବସିଥିବୁ ଶୂନଟାକୁ ଭକୁଆ ହେଇ
ବଡ଼ କଳାକାର ହୋ ତମେ ସୁରେଶ୍ ଭାଇ!
ତମର ଜବାବ୍ ନାହିଁ ଜବାବ୍ ନାହିଁ!

ଏଫ୍-୩୧, ସେକ୍ଟର-୬, ସିଡିଏ, କଟକ

# ଉଡ଼ିଯାଇଛି ବାରମାସୀ ଚଢେଇ

ରାଧାମୋହନ ଜେନା

ବାରମାସୀ ଚଢେଇଟି ଭିନ୍ନ ଭିନ୍ନ ଋତୁ, ମାସ ଅନୁସାରେ ତା'ର ରୂପ, ରଙ୍ଗ ବଦଳେଇ ଥାଏ । ସେ କୌଣସି ଗଛଡାଳରେ ବସିଗଲେ ତା'ର ସେହି ରଙ୍ଗରୂପ ସେ ଗଛର ଡାଳପତ୍ର, ଫଳଫୁଲ ସମ୍ଭାରକୁ ଶୋଭନୀୟ କରି ତୋଳେ । ଦେଖଣାହାରୀଙ୍କ ମନ ଉଲ୍ଲସିତ ହୁଏ । ଗୋଟିଏ ଗଛରେ ଚଢେଇଟି ସ୍ଥିର ହୋଇ ନ ରହି ଗଛରୁ ଗଛ ଉଡିବୁଲେ । ପ୍ରକୃତରେ କୌଣସି ଗଛକୁ ବାଛବିଚାର ନ କରି ଯେ କୌଣସି ଗଛଡାଳରେ ବସି ଚାଲିଥାଏ, ତାକୁ ଇଚ୍ଛା କଲେ ପାଇ ହୁଏ ନାହିଁ ଗୋଟିଏ ଗଛ ଡାଳରେ ।

ସୁରନା' (ସୁରେଶ ବଳବନ୍ତରାୟ)ଙ୍କ ଜୀବନ ଥିଲା ଗୋଟିଏ ବାରମାସୀ ଚଢେଇର ଜୀବନ ସଦୃଶ । ସେ ଥିଲେ ସରଳ ସ୍ୱଭାବ, ହସହସ ମୁହଁର ଏକ ନିଆରା ମଣିଷ । ସହଜରେ ଜଣାଅଜଣା ସମସ୍ତଙ୍କୁ ନିଜର କରି ପାରୁଥିଲେ । ବହୁତ ପଢୁଥିଲେ, ବହୁତ ଲେଖୁଥିଲେ, ବହୁତ ବୁଲୁଥିଲେ ମଧ୍ୟ, ପ୍ରତ୍ୟେକ କ୍ଷେତ୍ରରେ କିଛିଗୋଟେ ନୂଆ କରିବାର ଚିନ୍ତା ସର୍ବଦା କରୁଥିଲେ । ଗୋଟିଏ ବାରମାସୀ ଚଢେଇର ରଙ୍ଗାୟିତ ଜୀବନ ପରି ତାଙ୍କର ଜୀବନ ଥିଲା ସଦା ଚଳ ଚଞ୍ଚଳ ।

ନିଜ ଗ୍ରାମ ନରଣଗଡ ଉଚ୍ଚ ବିଦ୍ୟାଳୟ, ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜ ଓ ଶେଷରେ କଟକ ରେଭେନ୍‌ସା କଲେଜରୁ ଉଦ୍ଭିଦ ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ପରେ ସେଣ୍ଟ୍ରାଲ ଏକ୍ସାଇଜରେ ସେ ଚାକିରୀ ଜୀବନ ଆରମ୍ଭ କରିଥିଲେ । ପିଲାଦିନରୁ ତାଙ୍କର ସାହିତ୍ୟ, କଳା, ନାଟକ ପ୍ରତି ଆଗ୍ରହ ଥିଲା । ତେଣୁ ଛାତ୍ରାବସ୍ଥାରୁ ଚାକିରୀ ଶେଷ ପର୍ଯ୍ୟନ୍ତ ସେ କଳା, ସାହିତ୍ୟର ଏକ ସମାନ୍ତରାଳ ଜୀବନ ବିତାଉଥିଲେ ।

ଗୋଟିଏ ହାତରେ କଲମ, ଆଉ ଗୋଟେ ହାତରେ ରଙ୍ଗତୂଳୀ ଧରି ସେ କଳାସଂସ୍କୃତିର ବିଭିନ୍ନ ବିଭାଗ- ଗୀତ, ଗଳ୍ପ, ନାଟକ, ଗୀତିନାଟ୍ୟ, ଚିତ୍ରକଳା, ନୃତ୍ୟ, ଲୋକନାଟକ ଓ ଏଥିସହ ଅନୁବାଦକ, ଗୀତିକାର, ଗବେଷକ, ସମୀକ୍ଷକ, ପତ୍ରିକା ସଂପାଦନା, କଣ୍ଢେଇ ସଂଗ୍ରାହକ ଓ ସଂଗଠକ ରୂପରେ ସେ ହାତ ପାଦ ଚାଳନା କରୁଥିଲେ । ଗୋଟିଏ ବିଭାଗରେ ନିଜକୁ ସୀମିତ ରଖିବାକୁ ଇଚ୍ଛା କରୁ ନଥିଲେ । ଏସବୁ ବିଭାଗରେ ପ୍ରତିଷ୍ଠିତ ଓ ପ୍ରବୀଣମାନଙ୍କୁ ନିଜର ନମ୍ର ସ୍ୱଭାବରେ ଯଥେଷ୍ଟ ସମ୍ମାନ ପ୍ରଦର୍ଶନ ଓ ନବାଗତମାନଙ୍କୁ ଆନ୍ତରିକ ସ୍ନେହ, ଶ୍ରଦ୍ଧା ଏବଂ ଉତ୍ସାହ ପ୍ରଦାନ ଫଳରେ ଅଗଣିତ କଳାକାରମାନଙ୍କ ହୃଦୟରେ ସେ ନିଜର ସ୍ଥାନ ରଖି ପାରିଛନ୍ତି ।

ରୁଚିପୂର୍ଣ୍ଣ ଜୀବନଯାପନରେ ସେ ବହୁତ ଖୁସି ପାଉଥିଲେ । ସେ ନିତ୍ୟ ସୌଖୀନ ପୋଷାକ ପରିଧାନ କରୁଥିଲେ ଓ ପ୍ରତ୍ୟହ ବଦଳାଉ ଥିଲେ । ନିତ୍ୟ ବ୍ୟବହୃତ ଜିନିଷଗୁଡିକ ଅତି ରୁଚିକର ଓ ସୂକ୍ଷ୍ମ ଥିଲା । ଫୁଲ ପ୍ରତି ତାଙ୍କର ଅହେତୁକ ଆକର୍ଷଣ ଥିଲା । ନିଜ ଡ୍ରଇଁ ରୁମ୍‌ର ଫୁଲଦାନୀରେ ଭିନ୍ନଭିନ୍ନ ଜାତିଆ ଫୁଲଗୁଚ୍ଛ ସଜାଇ ରଖୁଥିଲେ । ଘରର ବାହାର ପାର୍ଶ୍ୱରେ ଅନେକ ଶୋଭନୀୟ ଫୁଲ କୁଣ୍ଡ ସଜାଇ ରଖିବାରେ ସେ ଆନନ୍ଦ ପାଉଥିଲେ । ଶହଶହ, ନାନାପ୍ରକାରର କଣ୍ଢେଇ ସଂଗ୍ରହ କରି ଏକ କଣ୍ଢେଇ ଘର ସୃଷ୍ଟି କରିଥିଲେ । ଘର କାନ୍ଥରେ ଝୁଲାଇଥିଲେ ଅନେକ ସ୍ୱଅଙ୍କିତ ଫଟୋଚିତ୍ର । ଆଲମାରୀମାନଙ୍କରେ ଭରି ରଖୁଥିଲେ ସାହିତ୍ୟ, କଳାର ସବୁ ବିଭାଗର ବହି, ପତ୍ର ପତ୍ରିକା ଓ ଶବ୍ଦକୋଷ । ସେହି ଶାନ୍ତ ପରିବେଶରେ ନିଜକୁ ନିମଜ୍ଜାଇ, ଲେଖାଲେଖି ସୃଜନଶୀଳ କାମରେ ସେ ସବୁବେଳେ ନିୟୋଜିତ ଥିଲେ ।

ଏକ ଅପରୂପ ପରିବେଶରେ ତାଙ୍କ ନୀଡର ସୃଷ୍ଟି ଥିଲା । ସେଠାରେ ଥିଲା ତାଙ୍କର ଅନେକ ସ୍ୱପ୍ନ ଓ ସର୍ଜନା । ସେ ନୀଡରୁ ଥରେ ସକାଳେ ବାହାରି ଗଲେ ପୁଣି ନୀଡକୁ ଫେରିଲା ବେଳକୁ ରାତି ଦଶଟା । ଭୁବନେଶ୍ୱରର ବିଭିନ୍ନ କଳା, ସାଂସ୍କୃତିକ ସ୍ଥଳରେ ନିଜର ଉପସ୍ଥିତି ଦେଇ କଳାକୃତି ଭାବନାର ନାନା ରଙ୍ଗ ଛିଟା ଛାଡି ଆସୁଥିଲେ । କଳାପ୍ରେମୀଙ୍କ ସହ ମିଶି ନୂଆ କଥା ଓ ନୂଆ ଗାଥାର ଉନ୍ମେଷ କରୁଥିଲେ ।



ଓଡ଼ିଶାର କଟକ, ଭୁବନେଶ୍ୱର, ରାଉରକେଲା, ଖୋର୍ଦ୍ଧା, ପାରାଦ୍ୱୀପ, ରାୟଗଡ଼ା, ବାଲେଶ୍ୱର ଆଦି ବିଭିନ୍ନ ସ୍ଥାନରେ ଅନେକ ସାହିତ୍ୟିକ ସଂସ୍ଥାମାନରେ ଜଡ଼ିତ ରହି ସେସବୁର ନୂଆ ରୂପରେଖ ପାଇଁ ସେ ପ୍ରୟାସ କରିଥିଲେ । ଓଡିଶା ବାହାରେ ସୀମାଞ୍ଚଳ, ବିଜୟୱାଡ଼ା, ବିଜୟନଗର, ବନାରସ, କଲିକତା, ଦିଲ୍ଲୀ, ଆହ୍ଲାବାଦ, ଲକ୍ଷ୍ନୌ ଆଦି ସ୍ଥାନମାନଙ୍କରେ ସଂସ୍କୃତିକ ଉତ୍ସବମାନଙ୍କରେ ଯୋଗ ଦେଉଥିଲେ । କଳା, ସଂସ୍କୃତି, ସାହିତ୍ୟ ନାଟକ ଉପରେ କେତେକ ବହି ପ୍ରକାଶ ପାଇଛି ତାଙ୍କ ଦ୍ୱାରା । ତାଙ୍କ କାର୍ଯ୍ୟ ବ୍ୟାପକ ଥିଲା ।

ଏହି କର୍ମଚଞ୍ଚଳ ଜୀବନଟି ହଠାତ୍ ଅଜଣା ଅକୁହା ଭାବରେ ଅସମୟରେ ନୀଡ଼କୁ ଛାଡି ଚାଲିଗଲା କେଉଁ ଅଜଣା ଅପନ୍ତରା ଇଲାକାକୁ । ସେଇ ବାରମାସୀ ଚଢ଼େଇଟି ଆଉ କୋଉ ଗଛଡାଳରେ ଦେଖିବାକୁ ମିଳୁନି । ମୟୂର ପରି ଜାତୀୟ ପକ୍ଷୀ ହେବାର ସେ କେବେ ଅଭିଳାଷ ରଖି ନଥିଲା । ଶୁଆଶାରୀଙ୍କ ପରି ଏକ ନିର୍ଦ୍ଦିଷ୍ଟ ପଞ୍ଜୁରୀରେ ବାନ୍ଧି ହୋଇ ରହିବାକୁ ଇଚ୍ଛା କରି ନଥିଲା । ନିଜ ରଙ୍ଗ ବଦଳାଇ ଡାଳକୁ ଡାଳ ଉଡ଼ି ବୁଲି ଅନେକ ଗଛରେ ବସି ଶେଷରେ କୁଆଡେ ଉଭାନ୍ ହୋଇଗଲା । ଗଛ ଡାଳରେ ବସିଥିଲା ବେଳେ ତା'ର ରଙ୍ଗ ଛିଟା ରୂପରେଖ ଦେଖଣାହାରୀଏ ଭୁଲି ପାରୁନାହାନ୍ତି । ସେ ସବୁ ରହିଛି ସ୍ମୃତିରେ ସ୍ମୃତିରେ..... ସମସ୍ତଙ୍କର ।

ନୀଡ ଆଜି ଖାଲି । ଚନ୍ଦନ ଟିପା ଦିଆ ଫଟୋଟି ଝୁଲୁଛି କାନ୍ଥରେ । ଖୋଲା ମେଲା ହୋଇ ରହୁଥିବା ବହିଗୁଡ଼ିକ ବନ୍ଦହୋଇ ରହିଛନ୍ତି । ରଙ୍ଗ, କଲମ, ତୂଳି ସବୁ ଶୁଖି ପଡ଼ିଛନ୍ତି । କଣ୍ଢେଇମାନେ ବାହୁନି ବାହୁନି ନିର୍ବାକ ହୋଇ ରହିଛନ୍ତି । ଫୁଲଦାନୀ ଶୋଭା ହରାଇଛି । ସବୁ ପାଲଟି ଯାଇଛନ୍ତି ନିର୍ଜୀବ, ନିସ୍ପନ୍ଦ । ସବୁଠାରେ ଶୂନ୍ୟତାର ବିସ୍ତାର । କିନ୍ତୁ ଆମେ କେହି ଭୁଲି ପାରୁନାହୁଁ ସେହି ଅଭୁଲା ସ୍ମୃତି । ଚିର ଅଲିଭା ହୋଇ ରହିବେ ଆମ ନିକଟରେ ସେ ସର୍ବଦା ଅଦୃଶ୍ୟରେ ଦୃଶ୍ୟମାନ ।



# SURESH BALABANTARAY

## Anil Dhir

He who denies his heritage, has no heritage : Khalil Gibran

Suresh Balabantaray shall always be remembered for his humility and low profile. His contribution towards highlighting the lesser known monuments in and around Bhubaneswar will be always cherished. He was a cultural activist, artist and writer, known for his work towards the revival of traditional and village arts. The successful annual Hirapur Dance Festival is solely due to his efforts.

I shall always remember the last outing we had with the school children at Hirapur in November. Suresh Babu had made the entire arrangements. Every member, including the nearly hundred school children had thoroughly enjoyed the trip. He had spoken so lucidly and simply to the kids and made the Yoginis very interesting. His short lecture and made the children curious and I had to continue where he left, spinning tales of the ghosts and spirits that haunt the place. I recollect the wonderful morning, the beautiful drive to the place through the lush fields, the gentle sun and the green lawns where the children worked on their quiz sheets-everything was picture perfect. The whole outing had culminated with a scintillating dance performance followed by a wonderful lunch, all thanks to him.

I also remember the solo art exhibition held by him at the Lalit Kala Akademi. Titled Tatwa, the exhibition presented his visual version of tantric concepts. Mystic elements and various forms of Tantric symbols had come alive at the exhibition. I remember that he has captioned his art with well-known couplets by eminent medieval poets.

Two months before his death, he had given me a short handwritten article on Hirapur. I could not put it in the first issue of Aitihya as he had not submitted the promised sketches that should have accompanied the piece. The short and simple article was written in his inimitable style, crisp and clear. Reading the article, one could easily visualize the sketches that he had intended to give (but never did).

I had seen some the collection of his nearly 5000 dolls that he had arranged in a miniature museum. He had curated another solo art exhibition titled Dolls for Adults in 2007.



I am always delighted to see that his book on the 64-Yoginis is still being sold by the Guide at the monument site. For years this has been the bible for all visitors who are dumfounded by the mysterious Yoginis. In his book he lucidly describes the different Yoginis and the cult. He has left an indelible mark on the study of heritage by his book.

Suresh Balabantaray's work was left half done. He had once told me of his plans after his retirement, when he would travel the state and look for the hidden treasures in the nook and crannies. I had told him that I would be only too glad to join him. I am sure he must have already gone to work in heaven, continuing the good work of highlighting forgotten heritage and culture. I and all the members of the Indian Trust for Art and Cultural Heritage shall always remember him with fondness. ◻



# ମାମୁ ଥିଲେ ବୋଲି

## ଡ. କାଳିନ୍ଦୀ ଚରଣ ସାହୁ

ସୁରେଶ ବାବୁ ମୋର ବନ୍ଧୁ। ଯଦିଓ ମୋଠାରୁ ସେ ବଡ଼ ମୁଁ ତାଙ୍କୁ ବନ୍ଧୁ ଭାବରେ ଦେଖେ ଓ ଡାକେ। ଆମ ଗୋଷ୍ଠି ଭିତରେ ଥିବା ଅଧିକାଂଶ କବି-ଲେଖକ ତାଙ୍କୁ ମାମୁ ବୋଲି ଡାକନ୍ତି। ମୋତେ ଲାଗେ ସେ କାହାର ପ୍ରକୃତ ମାମୁ ନୁହନ୍ତି। ସେତେବେଳେ ଆମେ ଅଧିକାଂଶ କବି-ଲେଖକ ଥିଲୁ କବି ଅଜୟ ସ୍ୱାଇଁଙ୍କର ଫ୍ୟାନ୍। ସୁରେଶ ବାବୁ କବି ଅଜୟ ସ୍ୱାଇଁଙ୍କର ଶ୍ୱଶୁରଘର ଖୋର୍ଦ୍ଧା ଆଡୁ ଲେଖାଯୋଖାରେ ଥିଲେ ମାମୁ। ତେଣୁ କବି ଅଜୟ ସ୍ୱାଇଁ ମାମୁ ଡାକୁଛନ୍ତି ମାନେ ତାଙ୍କ ଦେଖାଦେଖି ତାଙ୍କୁ ଆମେ ସମସ୍ତେ ମାମୁ ଡାକୁଥିଲୁ। କିନ୍ତୁ ମୋ ମନ ତାଙ୍କୁ ମାମୁ ଭାବରେ ଗ୍ରହଣ କରିପାରୁନଥିବାରୁ ମୁଁ ତାଙ୍କୁ ମୋ ବନ୍ଧୁ ଭାବରେ ଡାକୁଥିଲି।

ମୋତେ ଦେଖିଲେ ସେ କହନ୍ତି- ମୋର ବନ୍ଧୁ-ଗବେଷକ ଆସିଗଲେ। ବଙ୍ଗଳା ପୋଥିରେ ଶ୍ରୀ ଜଗନ୍ନାଥ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗରେ ନାମକରା ଗବେଷକମାନେ ବି ଏମିତି ଗବେଷଣା କରି ବହି ଲେଖିନାହାନ୍ତି। କାଳନ୍ଦୀ ସାହୁ ମୋର ବନ୍ଧୁଙ୍କ ବ୍ୟତୀତ ଏ କାମ ଆଉ କେହି କରିପାରିବେନି। କହିବେ- କାଳନ୍ଦୀ ବାବୁ ସେ ବହିଟା ମୁଁ ବଙ୍ଗଳାରେ ଅନୁବାଦ କରିଦେବି। ମୋତେ ଅନୁମତି ଦେବ। ଲାଭ ହେଲେ ତୁମର ଅଧେ ମୋର ଅଧେ। ହେଲେ କାହିଁ କେଉଁ ହେଇପାରିଲା ? ସେ ଲୋକ କୁଆଡ଼େ ଗଲା ? ଆମ ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା।

ସୁରେଶ ବାବୁ ଜଣେ ଭଲ ଲୋକ। ସବୁକ୍ଷେତ୍ରରେ ସେ ଜଣେ ସିଦ୍ଧହସ୍ତ କଳାକାର। ଯେଉଁଥିରେ ହାତ ମାରିଦେବେ ସେ ଉଠିଯିବ। 'ଚଉଷଠି ଯୋଗିନୀ ମହୋତ୍ସବ' ସୁରେଶ ବାବୁଙ୍କ ମାନସ ସନ୍ତାନ। ପ୍ରତିଭା ପଣ୍ଡା ମାଧ୍ୟମରେ ତାହା ଆଜି ଆନ୍ତର୍ଜାତିକ ମହୋତ୍ସବରେ ପରିଣତ ହୋଇପାରିଛି। ଆମେ ସବୁ ତାଙ୍କ ସହ ଜଡ଼ିତ ଥାଉ। ମୋତେ ସୁରେଶ ବାବୁ ଚଉଷଠି ଯୋଗିନୀ ପତ୍ରିକା ସଂପାଦନା କାର୍ଯ୍ୟଟି ଦେଇଥିଲେ। ୨୦୦୭ ମସିହାରୁ ଆଜି ପର୍ଯ୍ୟନ୍ତ ମୁଁ ୧୨ଖଣ୍ଡ ପତ୍ରିକା ସଂପାଦନା ଦାୟିତ୍ୱ ମାଆଙ୍କ କୃପାରୁ ସୁରୁରୁରୂପେ ସଂପାଦନା କରିଆସିଛି। କିନ୍ତୁ ଆଜି ମୁଁ ମୁକ୍ତ କଣ୍ଠରେ କହିବି ଯେ ସୁରେଶ ବାବୁ ଯିବା ପରଠାରୁ ପତ୍ରିକା ସଂପାଦନା ମୁଁ କରୁଛି। ହେଲେ ସୁରେଶ ବାବୁ ଥିଲାବେଳେ ପତ୍ରିକାଟି ଯେପରି ସରସ ସୁନ୍ଦର ଏବଂ ନିର୍ଭୁଲ ହେଉଥିଲା ଆଜି ତାହା ଆଉ ସେପରି ହେଉନାହିଁ। ଯେପରି ପତ୍ରିକା ଭିତରୁ ତା'ର ଶିରୀ ତୁଟିଯାଉଛି। ତେଣୁ ଆମ ଭିତରେ ମୋର ବନ୍ଧୁ ସୁରେଶ ବାବୁ ଥିଲେ ଶିରୀମୁଣ୍ଡି। ତାଙ୍କ ଯିବାପରେ ମୋତେ ଲାଗେ ମୁଁ ଯେପରି ଶ୍ରୀହୀନ ହୋଇପଡ଼ିଛି। ତାଙ୍କ ପରି ଜଣେ ବନ୍ଧୁ ଥିଲେ ବୋଲି ଆମେ କେତେ କ'ଣ କରିବାକୁ ସ୍ୱପ୍ନ ଦେଖୁଥିଲୁ। ତାଙ୍କର ସବୁଥିରେ ଦଖଲ ଥିଲା। ତାଙ୍କ ବିଷୟରେ କହିଲେ କଥା ସରିବନି। ଜଣେ ଲୋକ ଏତେ ବିଭାଗରେ କିପରି କାର୍ଯ୍ୟ କରୁଥିଲେ ଭାବିଲେ ମୁଁ ବିସ୍ମିତ ହୋଇଯାଏ। ଆପେ ଆପେ ମୋ ମୁଣ୍ଡ ତାଙ୍କ ପାଦତଳକୁ ନଇଁଯାଏ। ସେ ଥିଲେ ଏକାଧାରରେ ଜଣେ କବି, ଲେଖକ, ପ୍ରାବନ୍ଧିକ, ଗବେଷକ, ପ୍ରତ୍ନତତ୍ତ୍ୱ ସଂରକ୍ଷକ, ସଂଗ୍ରାହକ, ସଂଗଠକ, ମଞ୍ଚ ନିର୍ଦ୍ଦେଶକ, ଚିତ୍ରକର ଭାବରେ ସୁପରିଚିତ। ଜଣେ ବ୍ୟକ୍ତି, ଏତେ ସବୁ ବିଭାଗରେ କିପରି ଦକ୍ଷତାର ସହିତ କାର୍ଯ୍ୟ କରୁଥିଲେ, ଭାବିଲେ ବିସ୍ମିତ ହେବାକୁ ପଡ଼େ। ସୁରେଶ ବାବୁ ଥିଲେ 'ନୃତ୍ୟପ୍ରତିଭା'ର ସ୍ଥାୟୀ ସଭାପତି। ପ୍ରତିଭା ପଣ୍ଡା ସଂପାଦିକା। 'ନୃତ୍ୟ ପ୍ରତିଭା'କୁ ଆନ୍ତର୍ଜାତିକ ସ୍ତରରେ ଖ୍ୟାତି ଆଣିଦେବାରେ ଥିଲା ସୁରେଶ ବାବୁଙ୍କର ହାତ।



ସବୁଠାରୁ ବଡ଼ କଥା ହେଲା ସୁରେଶ ବାବୁ ଓଡ଼ିଶାର କଳା, ସଂସ୍କୃତି, ସାହିତ୍ୟକୁ ଆନ୍ତର୍ଜାତିକ ସ୍ତରରେ ପହଞ୍ଚାଇବା ପାଇଁ ସର୍ବଦା ସ୍ୱପ୍ନ ଦେଖୁଥିଲେ। ସେ ଖୁବ୍ ବଡ଼ ବଡ଼ ସ୍ୱପ୍ନ ଦେଖୁଥିଲେ। ସୁରେଶ ବାବୁ ଭୁବନେଶ୍ୱରରେ ରହୁଥିଲେ ମଧ ନିଜ ଗାଆଁକୁ ସେ ପାସୋରି ନଥିଲେ। ନିଜ ଜନ୍ମମାଟିର ଟେକ ରଖିବା ପାଇଁ ମଧ୍ୟ ଅନବରତ ଚିନ୍ତା କରୁଥିଲେ ଓ କାର୍ଯ୍ୟ ମଧ୍ୟ କରିଥିଲେ। ନିଜ ଗ୍ରାମରେ ସେ ଗୋଟିଏ କଣ୍ଢେଇ ସଂଗ୍ରହାଳୟ ଖୋଲିଥିଲେ। ସମଗ୍ର ପୃଥିବୀର ବିଭିନ୍ନ ଦେଶର ଶିଶୁମାନଙ୍କର ଅତି ପ୍ରିୟ କଣ୍ଢେଇଗୁଡ଼ିକୁ ଆଣି ଏକ ସଂଗ୍ରହାଳୟରେ ରଖିଥିଲେ। ଏହା ଏକ ଚମତ୍କାର ସଂଗ୍ରହାଳୟ। ମୋତେ ସେ ଅନେକଥର କହିଛନ୍ତି; କାଳନ୍ଦୀବାବୁ ମୁଁ ଆମ ଗ୍ରାମରେ ଗୋଟିଏ ଚଉଷଠି ଯୋଗିନୀ ମନ୍ଦିର ନିର୍ମାଣ କରିବି। ହୀରାପୁର ଓ ରାଣୀପୁର ଝରିଆଲରେ ଥିବା ଯୋଗିନୀ ମୂର୍ତ୍ତିଗୁଡ଼ିକ ଭାଙ୍ଗିଯାଇଛି। ଆମ ଗ୍ରାମରେ ପୂର୍ଣ୍ଣାଙ୍ଗ ଅବୟବ ଥିବା ମୂର୍ତ୍ତିସବୁ ଗଢ଼ାହେବେ। ସେ ସବୁ ମୂର୍ତ୍ତି ଓ ପୀଠର ଏକ ନକ୍ସା ମଧ୍ୟ ସେ ତିଆରି କରି ମୋତେ ଦେଖାଇଥିଲେ। ବିଶ୍ୱର ସବୁ ଦେଶରୁ ପର୍ଯ୍ୟଟକମାନେ ତାଙ୍କ ଗ୍ରାମକୁ ଆସିବେ। ସାରା ପୃଥିବୀରେ ନିଜ ଗ୍ରାମର ନାମକୁ ପ୍ରଚାର-ପ୍ରସାର କରିବା ପାଇଁ ସେ ସ୍ୱପ୍ନ ଦେଖୁଥିଲେ। ତାଙ୍କର ସେହି ସ୍ୱପ୍ନ ଅଧୁରା ରହିଗଲା। ଚଉଷଠି ଯୋଗିନୀମାନଙ୍କ ସଂପର୍କରେ ଇଂରାଜୀ ଭାଷାରେ ୧୫ଦିନ ମଧ୍ୟରେ ସେ ଏକ ଗବେଷଣାତ୍ମକ ପୁସ୍ତକ ଲେଖି ସମସ୍ତଙ୍କର ପ୍ରିୟଭାଜନ ହେବା ସହିତ ଚର୍ଚ୍ଚାର ପରିସରକୁ ଆସିଥିଲେ।

ସୁରେଶ ବାବୁ ଜଣେ ବିରଳ ମଣିଷ। ସେ ଏକ ବିସ୍ମୟ ପ୍ରତିଭା। ତାଙ୍କ ସହିତ ମୋର ଅନେକ ସମୟ ସାରସ୍ୱତ କାର୍ଯ୍ୟରେ କଟିଥିବାରୁ ମୁଁ ନିଜକୁ ସବୁବେଳେ ଗୌରବାନ୍ୱିତ ମନେକରି ଆସିଛି।



# ସୁରେଶ, ତୁମେ ଚିର ଅମ୍ଳାନ

ମନ୍ମଥ କୁମାର ଶତପଥୀ

୨୦୧୪ ଜାନୁଆରୀ ୧୩ ତାରିଖ।

ସକାଳୁ ସକାଳୁ ଦିନନାଥ ପାଠୀ ଖବର ଦେଲେ ସୁରେଶ ଚାଲିଗଲା, ଜଲଦି ଆସ ସ୍ୱର୍ଗଦ୍ୱାର ଯିବା। ହତବାକ୍ ହୋଇ ଶେଯରେ ବସିରହିଲି। ଆଖିରେ ଆଖିଏ ଲୁହ। ପାଖଘରୁ ଘରଣୀ ଗୀତା ଆସି ମୋର ହାବଭାବ ଦେଖି ଆଶଙ୍କାଗ୍ରସ୍ତ ମନରେ ପ୍ରଶ୍ନ କଲେ- ଚୁପ୍ ହୋଇ ବସିଛ କାହିଁକି ? କାହାର କ'ଣ ହେଲା ? ସୁରେଶ ମୃତ୍ୟୁ ସମ୍ବାଦ ଶୁଣି ସେ'ବି ସ୍ତମ୍ଭୀଭୂତ ହେଲେ, ବିଶ୍ୱାସ କରିପାରିଲେନି। ଦୁଇଦିନ ତଳେ ଘରେ ବସି ଚାହା ପିଇ ଯାଇଛନ୍ତି। ଖୁବ୍ ଭଲ ଥିଲେ, ହଠାତ୍ କ'ଣ ହେଲା ? ମୁହଁରୁ ମୋର ବାହାରି ପଡ଼ିଲା- କ'ଣ ଆଉ ହୋଇଥିବ ? ଯତୀନ୍ ଦାସଙ୍କ କଳାମହୋତ୍ସବ ମୃତ୍ୟୁର କାରଣ ହୋଇପାରେ। ଦୁଇଦିନ ତଳେ ଚାହାପିଆ ଟେବୁଲରେ ବସି ସେ ମୋତେ ବି ନିମନ୍ତ୍ରଣ କରିଥିଲେ ଯତୀନ୍ ବାବୁଙ୍କ ମହୋତ୍ସବରେ ଯୋଗଦେବା ପାଇଁ। ସଂଗୀତ ନାଟକ ଏକାଡେ଼ମୀ ଦାୟିତ୍ୱରେ ଥିବା ସମୟରେ, ନିମନ୍ତ୍ରଣକ୍ରମେ ମୁଁ ବି ଥରେ ସେଥିରେ ଯୋଗଦେଇ ଯେଉଁ ଅନୁଭୂତି ଅର୍ଜନ କରିଥିଲି, ତାହା ଭୁଲିବାର ନୁହେଁ। ସୁରେଶ ମୋତେ ସମ୍ବୋଧନ କରି ଭାଇନା ବୋଲି ଡାକେ। ବଡ଼ଭାଇର ଦାବି ନେଇ, ସୁରେଶଙ୍କୁ କହିଥିଲି ତମେ ସବୁ ଚିତ୍ରକର, ଯାଅ, ହେଲେ ନିଜକୁ ସମ୍ପୂର୍ଣ୍ଣଭାବେ ହଜେଇ ଦବନି। ସତକୁ ସତ, ଉତ୍ସବରୁ ଫେରିବା ପରଦିନ, ସେ ବାଥ୍‌ରୁମ୍‌ରେ ଦୁର୍ଘଟଣାର ସମ୍ମୁଖୀନ ହୋଇ ସାରାଦିନ ଜୀବନ ସହିତ ସଂଗ୍ରାମ କରି କରି, ଆରପୁରକୁ ଚାଲିଗଲା। ଶେଷ ସାକ୍ଷାତ୍‌ବେଳେ ସେ କହିଥିଲା- ଭାଇନା, ତମେ ଲୁପ୍ତ ସଂସ୍କୃତିର ଉଦ୍ଧାର ପାଇଁ ଏକା ଏକା ଆଗେଇ ଚାଲିଚ। ମୋର ଅବସର ପରେ, ସମସ୍ତଙ୍କୁ ଛାଡ଼ି ମୁଁ ତମକୁ ସହଯୋଗ କରିବି। ଦିହେଁ ମିଶି ସମଗ୍ର ଓଡ଼ିଶା ବୁଲିବା, ଅନେକ କଥା କରିବାର ଅଛି, ତମ ସହଯୋଗ ବିନା ତାହା ପୂରଣ ହୋଇପାରିବନି। ସୁରେଶର ଏପରି ଅନେକ କଥା ସ୍ମୃତିପଟରେ ଉଙ୍କି ମାରୁଥିଲା। ପୁଣି ଫୋନ୍ ଆସିଲା। କାଳ ବିଳମ୍ବ ନକରି ପହଞ୍ଚିବାବେଳକୁ ଦେଖିଲି, ସୁରେଶର ଘର ସାମନାରେ ଅସଂଖ୍ୟ ଲୋକଙ୍କ ସମାଗମ। ସାହିତ୍ୟ, ସଂଗୀତ, ନାଟକ ଜଗତର ଅନେକ ପ୍ରବାଦପୁରୁଷ, ସମସ୍ତଙ୍କ ଆଖିରେ ଲୁହ। ସମସ୍ତଙ୍କ ମୁହଁରେ ଗୋଟିଏ କଥା, "ସୁରେଶ ଚାଲିଗଲା"। ପ୍ରଶାନ୍ତ ଭାଇନାଙ୍କ ସାହିତ୍ୟ କୋଠିରେ, ତାଙ୍କର ନିତିଦିନିଆ ପ୍ରାତଃଭ୍ରମଣର ସାଙ୍ଗସାଥୀ- ସୌରୀନ୍ଦ୍ର ବାରିକ, ଦିନନାଥ ପାଠୀ, ବାସୁଦେବ ସାହୁ ପ୍ରମୁଖ ସାହିତ୍ୟ ଜଗତର ରଥୀ-ମହାରଥୀମାନେ ଏତେ ଭାଙ୍ଗିପଡ଼ିଥାଆନ୍ତି, ସତେ ଯେମିତି ତାଙ୍କର ସବୁକିଛି ହଜିଯାଇଛି। ସମସ୍ତେ ମିଶି ପହଞ୍ଚିଲୁ, ଶ୍ରାବଣୀ ଆପାର୍ଟମେଣ୍ଟରେ ସୁରେଶର ଶେଷ ଦର୍ଶନ ପାଇଁ। ହୃତ୍‌ସ୍ପନ୍ଦନ ବଢ଼ିବାରେ ଲାଗିଥାଏ, ବୁକୁତଳର କୋହ ଆଖିର ଲୁହରେ ପରିଣତ ହୋଇଯାଇଥାଏ। ସ୍ୱର୍ଗଦ୍ୱାରରେ ପହଞ୍ଚିବା ପାଇଁ ସୁରେଶ ସଂପୂର୍ଣ୍ଣ ପ୍ରସ୍ତୁତ। ରାମନାମ ସତ୍ୟ, ହରିନାମ ସତ୍ୟ ଧ୍ୱନିରେ ଗଗନ ପବନ ମୁଖରିତ। ସମସ୍ତେ ହାତଯୋଡ଼ି ସୁରେଶଙ୍କୁ ଶେଷ ସମ୍ମାନ ଜଣାଉଥିଲେ ସୁରେଶ ରଥ ପଛରେ, ସ୍କୁଟର ଛୁଟାଇ କିଛିବାଟ ଦୌଡ଼ିଥିଲି, ହେଲେ ଆଉ ତାହା ପାଖରେ ପହଞ୍ଚି ପାରିନଥିଲି। ଦୃଷ୍ଟିପଥରୁ ଅନ୍ତର୍ହିତ ହେବା ପୂର୍ବରୁ, ମୋର ମନେହେଲା, ସତେ ଯେମିତି ସୁରେଶ କହୁଛି- ଭାଇନା, ତୁମକୁ ଦେଇଥିବା ପ୍ରତିଶ୍ରୁତି ମୁଁ ଅବଶ୍ୟ ପାଳନ କରିବି। ଜଲଦି ମୁଁ ତୁମ ପାଖରେ ପହଞ୍ଚିବି ଅନ୍ୟ ରୂପରେ। ସୁରେଶର ଅତି ଆଦରର କନ୍ୟା - ଅନ୍ୟା ଅନୁରୂପା। ସେ ଅନନ୍ୟା, ସୁରେଶର ସମସ୍ତ ଗୁଣ ତା' ପାଖରେ ରହିଛି। ସୁରେଶ ପରି କାର୍ଯ୍ୟ ହାସଲ କରିବାରେ ସେ ସିଦ୍ଧହସ୍ତ। ତା'ର ନିର୍ଦ୍ଦେଶ, ବାପାଙ୍କର ଆପଣ ଅନ୍ୟତମ ଘନିଷ୍ଠ ବନ୍ଧୁ, ଆପଣଙ୍କୁ ନିଶ୍ଚିତଭାବେ କିଛି ଲେଖିବାକୁ ପଡ଼ିବ।



କ'ଣ ଲେଖିବି ? ସୁରେଶ ସଂପର୍କରେ ଯେତେ ଲେଖିଲେ ବି ତାହା ସଂପୂର୍ଣ୍ଣ ହେବନି । ସମୟେ ସମୟେ ସୁରେଶ ପ୍ରତି ମୋର ଈର୍ଷା ଜାଗ୍ରତ ହୁଏ । ଦିହିଁଙ୍କ ମଧ୍ୟରେ ଓଡ଼ିଶାର ଲୋକନାଟକ ଉପରେ ଅନେକ ଆଲୋଚନା ହୁଏ । ସର୍ବଭାରତୀୟ ସ୍ତରରେ ଲୋକନାଟକକୁ ପରିଚିତ କରିବା ନିମନ୍ତେ ସାମୂହିକଭାବେ କାର୍ଯ୍ୟ କରିବା ପାଇଁ ସିଦ୍ଧାନ୍ତ ବି ନିଆଯାଏ । ହେଲେ କଳ୍ପନାକୁ ବାସ୍ତବରୂପ ଦେବା ପାଇଁ ସୁରେଶର କ୍ଷୁଧା ଏତେ ପ୍ରବଳ କଚ୍ଛପ ତୁଲ୍ୟ ରାସ୍ତା ଖୋଜି ଖୋଜି ମୁଁ ଲକ୍ଷ୍ୟସ୍ଥଳରେ ପହଞ୍ଚିବା ପୂର୍ବରୁ, ସେ କଳ୍ପନାର କୋଣାର୍କ ତିଆରି କରିଦେଉଥାଏ । ଏତେ କମ୍ ବୟସରେ ତା'ର ମୃତ୍ୟୁ ନେଇ ମୁଁ ଭାବୁଛି ସେ ବୋଧହୁଏ ନିଜର ମୃତ୍ୟୁ ନେଇ କିଛି ଆଭାସ ପାଇଥିଲା । ନଚେତ୍ ଏତେ କମ୍ ସମୟରେ ସେ ସାହିତ୍ୟର ବିଶାଳ ସାଗର ଅତିକ୍ରମ କରିପାରି ନଥାଆନ୍ତା । ଜଣେ ସୃଜନଶୀଳ ସାହିତ୍ୟର ସ୍ରଷ୍ଟାଭାବେ କବିତା, ଗଳ୍ପ, ପ୍ରବନ୍ଧ ରଚନାରେ ସେ ଥିଲା ସିଦ୍ଧହସ୍ତ । ନାଟ୍ୟରଚନା, ନିର୍ଦ୍ଦେଶନା ସହିତ ସେ ଥିଲା ଗ୍ରୁପ୍ ଥିଏଟରର ଅନ୍ୟତମ ସ୍ଥାପିୟତା । ଆକାଶବାଣୀର ସେ ଥିଲା ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର ଓ ଶିଳ୍ପୀ । ଲୋକସଂସ୍କୃତି ଓ ଲୋକନାଟକର ସେ ଥିଲା ଜଣେ ଗବେଷକ । ସେ ଥିଲା ପ୍ରାମାଣିକ ଚଳଚ୍ଚିତ୍ରର ନିର୍ମାତା । ପ୍ରହ୍ଲାଦ ନାଟକ ଓ ଯକ୍ଷଗାନର ତୁଳନାତ୍ମକ ଅଧ୍ୟୟନ ନିମନ୍ତେ ସେ ପାଇଥିଲା ଫେଲୋସିପ୍ । ସେ ଥିଲା ଜଣେ ସୃଜନଶୀଳ ଚିତ୍ରଶିଳ୍ପୀ ଓ ଏକକ ଚିତ୍ରକଳା ପ୍ରଦର୍ଶନୀର ଆୟୋଜକଭାବେ ସେ ପାଇଥିଲା ସ୍ୱୀକୃତି ଓ ଅନେକ ସମ୍ମାନ । ମୋର ଅନୁଭବରେ ଏପରି ଜଣେ ବହୁମୁଖୀ ବ୍ୟକ୍ତିତ୍ୱ ସମଗ୍ର ରାଜ୍ୟରେ ବିରଳ ।

ସୁରେଶ ଚାଲିଯିବାର ପାଞ୍ଚବର୍ଷ ବିତିଗଲାଣି । ତାକୁ ଖୋଜିବାକୁ ଯାଇ ତା'ର ଅନ୍ତରଙ୍ଗ ବନ୍ଧୁ ଦିନନାଥ ପାଠୀ, ସୌରୀନ୍ଦ୍ର ବାରିକ, ବାସୁଦେବ ସାହୁଙ୍କ ପରି ଅନେକ ଆଉ ଫେରିନାହାନ୍ତି । ବର୍ତ୍ତମାନ ଭିମଟାଙ୍ଗୀସ୍ଥ ପ୍ରଶାନ୍ତ ଭାଇନାଙ୍କ ସାହିତ୍ୟକୋଠି ଶୂନ୍‌ଶାନ୍ । ଏମାନଙ୍କୁ ବାଦ୍ ଦେଇ ଆଉ ଯେଉଁ କିଛି ବଞ୍ଚି ରହିଛନ୍ତି, ବାର୍ଦ୍ଧକ୍ୟର ତାଡ଼ନାରେ ବ୍ୟତିକ୍ରମ ହୋଇ ଅପେକ୍ଷା କରିଛନ୍ତି ମହାନିଦ୍ରାକୁ । କେତେବେଳେ କେମିତି କାହାକୁ ଦେଖାହେଲେ, ସମସ୍ତେ ଖୋଜୁଛନ୍ତି ସୁରେଶ ପରି ଜଣେ ଦରଦୀ ବନ୍ଧୁଙ୍କୁ । ଆଜିର ସ୍ୱାର୍ଥସର୍ବସ୍ୱ ଦୁନିଆରେ ସେହିଭଳି ମଣିଷ ଗୋଟିଏ ପାଇବା କ'ଣ ସମ୍ଭବ ?

ଆରଚିଡ୍ ରୟାଲ ଆପାର୍ଟମେଣ୍ଟ
ନାଗେଶ୍ୱର ଟାଙ୍ଗୀ, ଭୁବନେଶ୍ୱର-୨
ମୋ ୯୪୩୯୭୧୯୮୫୭

# ଅନ୍ତରାଳେ

## ସୀମନ୍ତ ମହାନ୍ତି

ସୁରେଶ ବଳବନ୍ତରାୟ ଅଚିହ୍ନା ଅଜଣା ମଣିଷକୁ ମୁହୂର୍ତ୍ତକେ ଆପଣାର କରି ପ୍ରେରଣା ଯୋଗେଇ ପାରୁଥିବା ଜଣେ ବଳିଷ୍ଠ ତଥା ପ୍ରାଣସ୍ପର୍ଶୀ ବ୍ୟକ୍ତିତ୍ୱ। ତାଙ୍କ ସାଙ୍ଗେ ପ୍ରଥମେ ମୋର ଦେଖାହୁଏ ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡରେ ୧୯୯୯ ମସିହାରେ। ସେ ବର୍ଷ ଅକ୍ଟୋବର ୨୯ର ମହାବାତ୍ୟା ପରେ ପରେ ବରିଷ୍ଠ ନାଟ୍ୟକାର ଡ. ରମେଶ ପ୍ରସାଦ ପାଣିଗ୍ରାହୀ ମହାବାତ୍ୟାକୁ ବିଷୟ କରି ନାଟକଟିଏ ଲେଖିବାକୁ ମନସ୍ଥ କରିଥିବାରୁ ସେ ମୋ ସ୍କୁଟର ପଛରେ ବସି ଭୁବନେଶ୍ୱର ତଥା ଆଖପାଖ ଅଞ୍ଚଳ ବୁଲିବୁଲି ବାତ୍ୟାର ବିଭୀଷିକା ଦେଖି ଉପଲବ୍ଧ କରୁଥା'ନ୍ତି। ସେତେବେଳେ ଦିନେ ସଂଧ୍ୟାରେ ସୁରେଶ ଭାଇଙ୍କ ସାଙ୍ଗେ ରମେଶ ସାର୍ ଓ ମୁଁ ପୁରୁଣା ବସ୍‌ଷ୍ଟାଣ୍ଡରେ ଦେଖା ହେଇଗଲୁ। ସାର୍ ଆଉ ତାଙ୍କ ଭିତରେ ଗପ ଚାଲିଲା ଅସରନ୍ତି, ଅର୍ଥପୂର୍ଣ୍ଣ, ଗପସପ ମୁଁ ଶ୍ରୋତାଟିଏ ସାଜିଲି। ତା' ଭିତରେ ଜୋର୍ ଅସରାଏ ବର୍ଷା ବି ହୋଇ ଛାଡ଼ିଗଲା। ଏହା ପୂର୍ବରୁ ସୁରେଶ ଭାଇଙ୍କ ସାଙ୍ଗେ ଦେଖା ସାକ୍ଷାତ ପରିଚିତ ହୋଇସାରିଥିଲେ ମଧ୍ୟ ସେ ଦିନର ବର୍ଷାଭିଜା ଆତ୍ମୀୟ-ଅନ୍ତରଙ୍ଗ ଆଳାପ ହିଁ ତାଙ୍କ ସହିତ ମୋ ସମ୍ପର୍କର ଆଦ୍ୟ ସ୍ମୃତି।

ବୃତ୍ତି, ବୟସ ନିର୍ବିଶେଷରେ ସେ ସମସ୍ତଙ୍କ ସାଙ୍ଗେ ଅତି ସହଜରେ ମିଶିଯାଇପାରୁଥିଲେ । ସେ ଆସି ପହଞ୍ଚିଗଲାମାତ୍ରେ ତାଙ୍କ ଭାବମୟ ଅର୍ଥପୂର୍ଣ୍ଣ କଥାବାର୍ତ୍ତା ମାଧ୍ୟମରେ ପରିବେଶକୁ ଜୀବନ୍ତ ପ୍ରାଣବନ୍ତ କରି ପକାଉଥିଲେ।

ତାଙ୍କର ବୃତ୍ତି ଥିଲା ଏକ କିନ୍ତୁ ପ୍ରବୃତ୍ତି ଅନେକ। ସେହି ବିବିଧ ପ୍ରବୃତ୍ତିର ପାରଦର୍ଶିତା ହିଁ ତାଙ୍କୁ ସମାଜର ବିଭିନ୍ନ ବର୍ଗର ସୃଜନଶୀଳ ବ୍ୟକ୍ତିବିଶେଷମାନଙ୍କ ସହିତ ସମ୍ପର୍କ ସ୍ଥାପନ ନିମନ୍ତେ ସେତୁ ସାଜୁଥିଲା।

ସେ ଥିଲେ କର୍ମଠ ତଥା ସଦା ଚଞ୍ଚଳ। ଯେଉଁଥିପାଇଁ ବୋଧେ ସେ ତାଙ୍କ ବହୁମୁଖୀ ସୃଜନଶୀଳ ପ୍ରତିଭାର ଉପଯୁକ୍ତ ପରିପ୍ରକାଶ କରିବାକୁ ସକ୍ଷମ ହୋଇପାରିଥିଲେ। ମୋର ଯାହା ଅନୁମାନ ତାଙ୍କର ମୁଖ୍ୟ ପ୍ରବୃତ୍ତି ବା ରୁଚି ଥିଲା ସାହିତ୍ୟ। ସାହିତ୍ୟର ବିଭିନ୍ନ ବିଧା ସହିତ ସେ ନିଜକୁ ଜଡ଼େଇ ରଖୁଥିଲେ। ସୃଜନ ସାହିତ୍ୟ ସହିତ ସମାଲୋଚନାରେ ମଧ୍ୟ ତାଙ୍କର ବ୍ୟୁତ୍ପତ୍ତି ଥିଲା। ମୌଳିକ ରଚନା ସହିତ ଅନୁବାଦ ସାହିତ୍ୟରେ ମଧ୍ୟ ସେ ମନୋନିବେଶ କରିଥିଲେ। ମୋ ଜାଣିବାରେ ସେ ବଙ୍ଗଳାର ପ୍ରସିଦ୍ଧ ନାଟ୍ୟକାର ମନୋଜ ମିତ୍ରଙ୍କ ଦୁଇଟି ନାଟକକୁ 'ଧଡ଼ିରାମାୟଣ' ଓ 'ଅପରେସନ୍ ଭଉଁରାଗଡ଼' ନାମରେ ଅନୁବାଦ କରିଛନ୍ତି। ସେ ଖାଲି ଭାଷାନ୍ତର କରିନାହାନ୍ତି ବରଂ ନାଟକ ଦୁଇଟିକୁ ଓଡ଼ିଆ ସଂସ୍କୃତି ସହିତ ସମନ୍ୱିତ କରିପାରିଛନ୍ତି।

'ଧଡ଼ି ରାମାୟଣ' ନାଟକଟି ଭୁବନେଶ୍ୱରର ପୁରାତନ ତଥା ଅଗ୍ରଣୀ ନାଟ୍ୟ ଅନୁଷ୍ଠାନ 'ଉତ୍ତର ପୁରୁଷ' ଦ୍ୱାରା ଅଭିନ୍ନ ରାଉତରାୟଙ୍କ ନିର୍ଦ୍ଦେଶନାରେ ବହୁବାର ମଞ୍ଚସ୍ଥ ଓ ଉଚ୍ଚ ପ୍ରଶଂସିତ ହୋଇଛି। 'ଅପରେସନ ଭଉଁରାଗଡ଼' ମଧ୍ୟ ସେଇ 'ଉତ୍ତର ପୁରୁଷ' ଆୟୋଜିତ ଏକ ପ୍ରଯୋଜନାଭିତ୍ତିକ ନାଟ୍ୟ କର୍ମଶାଳାର ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ପ୍ରସ୍ତୁତ କରାଯାଇ ମଞ୍ଚସ୍ଥ ହୋଇଥିଲା। ସେହି କର୍ମଶାଳା ଓ ନାଟକର ନିର୍ଦ୍ଦେଶନା ଦାୟିତ୍ୱରେ ଥିଲେ ରାଷ୍ଟ୍ରୀୟ ନାଟ୍ୟ ବିଦ୍ୟାଳୟ, ନୂଆଦିଲ୍ଲୀର ସ୍ନାତକ ତଥା 'ମୁକ୍ତି' ଥିଏଟରର ସ୍ୱନାମଧନ୍ୟ ନିର୍ଦ୍ଦେଶକ ସୂର୍ଯ୍ୟ ମହାନ୍ତି। ଏହି ନାଟକ ଦୁଇଟି ପ୍ରକାଶିତ ମଧ୍ୟ। ଅନୁବାଦ ସହିତ ନାଟକ ସଂକ୍ରାନ୍ତୀୟ ଅନେକ ପ୍ରବନ୍ଧ ମଧ୍ୟ ସୁରେଶ ଭାଇ ରଚନା କରିଯାଇଛନ୍ତି।

ଭୁବନେଶ୍ୱର ସମୀପବର୍ତ୍ତୀ ହୀରାପୁର ଚଉଷଠି ଯୋଗିନୀ ଏବଂ ଭୁବନେଶ୍ୱରର ପ୍ରସିଦ୍ଧ ଐତିହାସିକ ମନ୍ଦିର ଓ କିର୍ତ୍ତୀରାଜି ବିଷୟରେ ଗବେଷଣାତ୍ମକ ତଥ୍ୟସମ୍ବଳିତ ଦୁଇଟି ପୁସ୍ତକ ଯଥାକ୍ରମେ 'ଚଉଷଠୀ ଯୋଗିନୀ' ଓ 'ଏଇ ସହର ଏଇ ସମୟ' ନାମରେ ତାଙ୍କର ପୁସ୍ତକ ଓଡ଼ିଆ ଓ ଇଂରାଜୀ ଭାଷାରେ ପ୍ରକାଶିତ ହୋଇ ଜନାଦୃତି ଲାଭକରିଛି। ସେ ଜଡ଼ରେ ଜୀବନ ଦେଖିପାରୁଥିଲେ। ଜଡ଼ ସହିତ ତାଙ୍କ ସୃଜନ ସମ୍ପର୍କର ନିଦର୍ଶନ ତାଙ୍କ ବାସଗୃହରେ ଥିବା 'କଣ୍ଢେଇ ଘର' ସଂଗ୍ରହାଳୟ। ସେଇଠି ସେ ସଜେଇ ରଖିଛନ୍ତି ଦେଶ ବିଦେଶରୁ ସଂଗ୍ରହକରି ଆଣିଥିବା ଅନେକ ଛୋଟ ବଡ଼ କଣ୍ଢେଇ।

ତାଙ୍କର ଅନ୍ୟ ଏକ ରୁଚି ଥିଲା ଚିତ୍ର ଆଙ୍କିବା। ଭୁବନେଶ୍ୱର ଖାରବେଳ ନଗରସ୍ଥିତ ରାଷ୍ଟ୍ରୀୟ ଲଳିତ କଳା କେନ୍ଦ୍ର, ରିଜିଓନାଲ ସେଣ୍ଟରରେ ତାଙ୍କର ଏକ ଚିତ୍ରକଳା ପ୍ରଦର୍ଶନୀ ଦେଖିବାକୁ ଯାଇଥିଲି। ଚିତ୍ର ସହିତ ତତ୍‌ସଂଲଗ୍ନ ନାମକରଣ ବା ଶୀର୍ଷକଗୁଡ଼ିକ ମଧ୍ୟ ବେଶ୍ ମନୋରମ ତଥା ଆକର୍ଷଣୀୟ ଲାଗିଥିଲା।

ଉପରୋକ୍ତ ସୃଜନ କ୍ରିୟା ସହିତ ତାଙ୍କଠାରେ ଦେଖିବାକୁ ମିଳୁଥିଲା ଜଣେ ଦକ୍ଷ ସଂଗଠକର ଲକ୍ଷଣ। ଏକାଧିକ ଅନୁଷ୍ଠାନ ଗଢ଼ିଥିଲେ। ବହୁ ଅନୁଷ୍ଠାନର ପ୍ରମୁଖ ସଂଗଠକ ତଥା କର୍ଣ୍ଣଧାର ମଧ୍ୟ ସାଜିଥିଲେ। ଏ ବିଷୟରେ ମୋ ବ୍ୟତୀତ ଅନ୍ୟ କେହି ଅର୍ଥାତ୍ ଯୋଉମାନେ ତାଙ୍କ ସହିତ ଅନୁଷ୍ଠାନରେ ଥିଲେ ସେମାନେ ଲେଖିଲେ ଅଧିକ ଶୋଭନୀୟ ହୋଇପାରିବ ବୋଲି ମୋର ବିଶ୍ୱାସ।

ଯା' ଭିତରେ ସେ ପୁଣି କେତେ କାହାକୁ ପ୍ରେରଣା ଯୋଗାଇବା ସହିତ ସାହାଯ୍ୟ ସହଯୋଗର ବଳିଷ୍ଠ ବାହୁ ମଧ୍ୟ ବଢ଼େଇ ଦେଉଥିଲେ। ଦିନେ ସେ ଗୋଟେ ଗିଫ୍ଟ ପ୍ୟାକ୍ ଆଣିଦେଲେ। ଖୋଲି ଦେଖିଲାବେଳକୁ ସେଥିରେ ଥିଲା ମୁଁ ଅତିଥିଙ୍କ ହାତରୁ ଏକ ପୁରସ୍କାର ଗ୍ରହଣ କରୁଥିବାର ବିରଳ ଫଟୋ। ଫଟୋଟିକୁ ସେ ନିଜେ ଉଠେଇ, ବନ୍ଧେଇ, ଗିଫ୍ଟ ପ୍ୟାକ୍ କରି ଆଣି ଦେଇଥିଲେ।

ସେ ମତେ ଥରେ ଗୋଟେ ଫେଲୋସିପ୍ ଆବେଦନ କରିବାକୁ ପ୍ରସ୍ତାବ ଦେଲେ। ନିର୍ଦ୍ଧାରିତ ଦିନ ଠିକ୍ ସମୟରେ ତାଙ୍କ ଘରେ ପହଞ୍ଚିଲି। ଭାବୁଥିଲି, ପ୍ରପୋଜାଲର ସଂକ୍ଷିପ୍ତ ବିଷୟ ଓ ଉପ୍ସୁରାଇଜେସନ୍ ସବୁ ସେ ଡାକିବେ, ମୁଁ ଲେଖିବି। କିନ୍ତୁ ସେ ନିଜେ ଲେଖିଚାଲିଲେ ଏକା ନିଃଶ୍ୱାସକେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ। ଏକ ଲୟରେ, ଏକା ଥରକେ ସାରିଦେଲେ। ଦେଖାଗଲା ତାଙ୍କ ଧୈର୍ଯ୍ୟ, ଧ୍ୟାନ, ବାହ୍ୟଜଗତରୁ ନିଜକୁ ପ୍ରତ୍ୟାହାର କରିପାରିବାର ପ୍ରକ୍ରିୟା, ବିଷୟ ସମ୍ବନ୍ଧରେ ଗଭୀର ଜ୍ଞାନ ଏବଂ ଇଂରାଜୀ ଭାଷା ଜ୍ଞାନ। ବିଜ୍ଞାନର ଛାତ୍ର ହୋଇଥିଲେ ମଧ୍ୟ ଓଡ଼ିଆ ଓ ଇଂରାଜୀ ଭାଷା ଉପରେ ତାଙ୍କର ଯଥେଷ୍ଟ ବିଦ୍‌ବତା ଥିଲା। ଦକ୍ଷତା ଓ ଏକାଗ୍ରତା ହିଁ ଅସାଧ୍ୟ ସାଧନର ଅମୋଘ ଅସ୍ତ୍ର।

ଦିନେ ସେ ନିଜ ଉଦ୍ୟମରେ ଖୋର୍ଦ୍ଧାରେ ଥିବା 'ନାଟ୍ୟ ଚେତନା' ଅନୁଷ୍ଠାନର ନାଟ୍ୟଗ୍ରାମରେ ଏକ କବି ସମ୍ମିଳନୀ ତଥା କବିତା ପାଠୋତ୍ସବ ଆୟୋଜନ କରିଥିଲେ। ସେଠାରେ ସେ ମୋ ନିର୍ଦ୍ଦେଶିତ କାବ୍ୟନାଟକ 'ଅଳକା ସାନ୍ୟାଲ' ଯାହାକି ଜ୍ଞାନପୀଠ ପୁରସ୍କାର ବିଜେତା କବି ପଦ୍ମଶ୍ରୀ ଡ. ସଚ୍ଚି ରାଉତରାୟଙ୍କ ସମନାମୀ କବିତାର ମଞ୍ଚନାଟ୍ୟ ରୂପାୟନ, ତା' ଭିଡ଼ିଓ



ରେକର୍ଡିଂକୁ ସେଠାରେ ପ୍ରଦର୍ଶିତ କରିବାକୁ ପ୍ରସ୍ତାବ ଦେଲେ ଏବଂ ତାହା ମଧ୍ୟ ହେଲା। କାବ୍ୟନାଟକଟି ମଞ୍ଚସ୍ଥ ହେଲାବେଳେ ଯେଉଁ ସୁଧୀ ସାହିତ୍ୟିକମାନେ ଦେଖିବାର ସୁଯୋଗ ପାଇପାରିନଥିଲେ ସେମାନେ ସେଠାରେ ତା'ର ଭିଡ଼ିଓ ରେକର୍ଡିଂ ଦେଖିପାରିଲେ। ଦେଖିସାରିବା ପରେ ଉପସ୍ଥିତ କବି, ସାହିତ୍ୟିକମାନଙ୍କର ମୋ ସହିତ ଏକ ଆଲୋଚନାଚକ୍ର ମଧ୍ୟ ସେଇ କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ଥିଲା, ଫଳରେ ମୁଁ ଉପକୃତ ହୋଇଥିଲି।

ଆଉ ଦିନେ ସଂଜବେଳେ ଭୁବନେଶ୍ୱର ପୁରୁଣା ବସ୍‌ଷ୍ଟାଣ୍ଡରେ ମୁଁ ଠିଆ ହୋଇଥିବାବେଳେ ସେ ଆସି ଦି'ଫରି ପୃଷ୍ଠାର କାଗଜ ମତେ ଧରାଇଦେଇ ଉତ୍ସାହୋଦ୍ଦୀପକ ସ୍ୱରରେ କହିଲେ- ଖାଲି ବଙ୍ଗଳାରେ ଗୌତମ ହାଲଦାର କ'ଣ 'ମେଘନାଦ ବଧ' କାବ୍ୟ ସୋଲୋ ଡ୍ରାମା କରିପାରିବେ ଆମେ କ'ଣ ପାରିବାନି? ଆପଣ ଏଇଟାକୁ ସୋଲୋ ଡ୍ରାମା କରନ୍ତୁ। ସେ ଦେଇଥିବା କାଗଜ ପୃଷ୍ଠାରେ ଥିଲା କବିବର ରାଧାନାଥ ରାୟଙ୍କ ପ୍ରସିଦ୍ଧ 'ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ' କବିତା। ଏତେବଡ଼ ବିଷୟ କ'ଣ କେମିତି ଉପସ୍ଥାପନ କରିବି କିଛି ବୁଝିପାରିଲିନି। ସେହି କବିତାର ପାଦଟୀକାରେ ଲେଖାଥିଲା ଯେ କବିତାଟି ସାରଳା ମହାଭାରତ 'ଶଲ୍ୟ' ପର୍ବ ଦ୍ୱାରା ଅନୁପ୍ରାଣିତ ବୋଲି। ଶଲ୍ୟ ପର୍ବ ପଢ଼ିଲି, ହେଲେ ଦୁର୍ଯ୍ୟୋଧନଙ୍କ ରକ୍ତନଦୀ ସନ୍ତରଣ ବିଷୟରେ କିଛି ବି ପାଇଲିନି। ବେଶ୍ କିଛି ଦିନ ଗଡ଼ିଗଲା ପରେ ବଡ଼ଭାଇ ବିଶିଷ୍ଟ ଛଉ ନୃତ୍ୟବତ୍ ସଦାଶିବ ପ୍ରଧାନ କହିଲେ ଏ କଥା ଶଲ୍ୟପର୍ବରେ ନାହିଁ। ସେ ମତେ 'ଗଦାପର୍ବ-ଗୋଳଯୁଦ୍ଧ, ଯୋଗିନୀଗଣଙ୍କ ମେଳରେ ଦୁର୍ଯୋଧନ ଓ ରକ୍ତନଦୀ ସନ୍ତରଣ'ର ଜେରକ୍ସ କପି ଆଣିଦେଲେ। ପଢ଼ିଲି, ଯୋଜନା କଲି ଦୁଇଟିଯାକକୁ ମିଶାଇ ନାଟକ କରିବାକୁ। ମୋର ମାନସିକ ପ୍ରସ୍ତୁତି ଚାଲିଥିଲାବେଳେ ଜ୍ଞାନପୀଠ ପୁରସ୍କାର ବିଜେତା କବି ପଦ୍ମବିଭୂଷଣ ଡ. ସୀତାକାନ୍ତ ମହାପାତ୍ରଙ୍କ 'ଦୁର୍ଯୋଧନ' ଶୀର୍ଷକ କବିତା ପଢ଼ିବାକୁ ପାଇଲି। ଏଇଟିକୁ ମଧ୍ୟ ପୂର୍ବୋକ୍ତ କବିତା ସହିତ ସଂଯୋଗ କରି ନାଟକ କରିବାକୁ ମନସ୍ଥ କଲି। ଯା' ଭିତରେ କିଛି ବର୍ଷ ବିତିଯାଇଥାଏ, ନାଟ୍ୟ ପ୍ରଶିକ୍ଷଣ ଲାଭ କରିଥିବା ଅଭିନେତା ସୁଶୀଲ ଦାସଙ୍କୁ ଡାକି ତିନୋଟିଯାକ କବିତା ତାଙ୍କୁ ଦେଇ କହିଲି- ତମେ ତମର ପଢ଼ି ପ୍ରସ୍ତୁତ ହବା ଆରମ୍ଭ କର, ସପ୍ତାହକୁ ସପ୍ତାହ ଆମ ଘରକୁ ଆସି ଅଭ୍ୟାସ କରିଯିବ। ଥରେ କି ଦି'ଥର ସେ ଆସି ଆମ ଘରେ ଅଭ୍ୟାସ କରି ଯାଇଥା'ନ୍ତି। ପଠନ ଅଭ୍ୟାସ ଆରମ୍ଭ ହବା କଥାଟିକୁ ମୁଁ ଖାଲି ସୁରେଶ ଭାଇଙ୍କୁ ଥରେ ରବୀନ୍ଦ୍ର ମଣ୍ଡପ ଛକରେ କହି ଦେଇଥିଲି। ତା'ର ଅଳ୍ପ କେଇଦିନ ଭିତରେ ଏକ ସଂଧ୍ୟାବେଳେ ଅଭିନେତା, ନିର୍ଦ୍ଦେଶକ ଅଭିନ୍ନ ରାଉତରାୟ ଫୋନ୍ କରି ଦୁଃସମ୍ବାଦଟି ଦେଲେ- ସୁରେଶ ବାବୁ ଚାଲିଗଲେ। ମର୍ମାହତ ହୋଇ ପ୍ରଶାନ୍ତ ମହାପାତ୍ରଙ୍କୁ ଡାକି ସାଙ୍ଗହୋଇ ସୁରେଶ ଭାଇଙ୍କ ଘରକୁ ଗଲୁ ଶେଷ ଦର୍ଶନ ପାଇଁ।

ଏହାର ପ୍ରାୟ ଅଢ଼େଇ ତିନି ବର୍ଷ ନାଟ୍ୟାଭାସ ପରେ ଭୁବନେଶ୍ୱର ଭଂଜ କଳାମଣ୍ଡପରେ ମଞ୍ଚସ୍ଥ ହେଲା ସୁରେଶ ଭାଇଙ୍କ ମାନସ ପ୍ରେରିତ କାବ୍ୟ ନାଟକ 'ରକ୍ତନଦୀ ସନ୍ତରଣ'।

ନାଟ୍ୟ ମଞ୍ଚନ ସଂଧ୍ୟାରେ ସୁରେଶ ଭାଇଙ୍କ ଫଟୋରେ ଫୁଲମାଳ ପିନ୍ଧେଇ ମଞ୍ଚରେ ସ୍ଥାପନ କରାଯାଇଥିଲା। ଯତ୍‌କିଞ୍ଚିତ୍ ସମ୍ମାନ ପ୍ରଦର୍ଶନ ପୂର୍ବକ ନାଟକ ଆରମ୍ଭ ଓ ଶେଷରେ ଦର୍ଶକମାନଙ୍କୁ ଜଣେଇ ଦେଇଥିଲୁ ଯେ ଏ ନାଟକ ତାଙ୍କ ମାନସପ୍ରସୂତ। ସେ ନ ଥିଲେ ଏ ନାଟକ ସମ୍ଭବପର ହୋଇପାରିନଥାନ୍ତା।

ଏତେ ବଡ଼ ପ୍ରଚେଷ୍ଟାର ପ୍ରାରମ୍ଭ ହିଁ ଥିଲେ ସେ। ସେ କବିତାଟିକୁ ମୋ ହାତକୁ ବଢ଼େଇ ଦେଇ ନଥିଲେ ମୁଁ ବା ତା'ର ପ୍ରଯତ୍ନ କରିପାରିଥା'ନ୍ତି କେମିତି? କବିତାଟିକୁ ନାଟକ କରିବା ପାଇଁ ଏକ ମହାର୍ଘ ମୁହୂର୍ତ୍ତରେ ଉନ୍ମୁକ୍ତ ହୃଦୟ ପବିତ୍ର ମନରେ ସେ ହିଁ ବୀଜ ରୋପଣ କରିଥିଲେ। କାଳକ୍ରମେ ତାହା ବୃକ୍ଷାକାର ହୋଇ ଫଳ ଧାରଣ କଲା। ମୋ ନିର୍ଦ୍ଦେଶକୀୟ ଡାଇଓଡାଟାରେ ଆଉ ଏକ ଅନବଦ୍ୟ ନାଟକର ନାମ ଯୋଡ଼ା ହୋଇଗଲା। କିନ୍ତୁ 'ରକ୍ତନଦୀ ସନ୍ତରଣ' ନାଟକର ନାଁ ମନକୁ ଆସିବା ମାତ୍ରେ ତା' ଅନ୍ତରାଳରେ ମନେପଡ଼ନ୍ତି ସେ ନାଟକର ସୂତ୍ରଧର ସୁରେଶ ଭାଇ। କୃତଜ୍ଞତାରେ ମୁଣ୍ଡ ନଇଁଯାଏ ତାଙ୍କ ମହାନ ପବିତ୍ର ଆତ୍ମା ନିକଟରେ।

ମୁଁ ତାଙ୍କ ଋଣ ପରିଶୋଧ କରିପାରିବିନି ବରଂ ଋଣୀ ହୋଇ ରହିବି ଚିରକାଳ। ❖

**ସୀମନ୍ତ ମହାନ୍ତି**

**୪୬, ଶହୀଦ ନଗର**

**ଭୁବନେଶ୍ୱର-୭୫୧୦୦୭**



# ଶ୍ରଦ୍ଧାରେ ସ୍ମରଣ

ଚୌଧୁରୀ ଜୟପ୍ରକାଶ ଦାସ

୧୯୯୪ "Central Revenue Sports Board, Govt. of India" ପକ୍ଷରୁ ଏକ ନାଟ୍ୟ କର୍ମଶାଳା, ଓଡ଼ିଶାର ରାଜଧାନୀ ଭୁବନେଶ୍ୱରରେ ହେବାର ସ୍ଥିର ହେଲା । ଭୁବନେଶ୍ୱରସ୍ଥିତ ଆୟକର ଓ ଆମଦାନି ଶୁଳ୍କ କାର୍ଯ୍ୟାଳୟର ପରିଚାଳନାରେ ଏହି ନାଟ୍ୟଶାଳା ଆୟୋଜନ କରାଯାଇଥିଲା । ସାରା ଭାରତରୁ ସେହି ବିଭାଗରେ କାମ କରୁଥିବା ଇଚ୍ଛୁକ ବ୍ୟକ୍ତି ବିଶେଷ ଏହି କର୍ମଶାଳାରେ ଯୋଗ ଦେଇଥିଲେ । ତନ୍ମଧ୍ୟରୁ ସୁରେଶ ବଳବନ୍ତରାୟ ଜଣେ ଥିଲେ । ଶ୍ରୀଯୁକ୍ତ ସୂର୍ଯ୍ୟ ମହାନ୍ତି, ଶ୍ରୀଯୁକ୍ତ ଚକ୍ରଧର ଜେନା ଏବଂ ମୁଁ ଶିକ୍ଷକ ହିସାବରେ ଦାୟିତ୍ୱରେ ଥିଲୁ । ନାଟ୍ୟ କର୍ମଶାଳା ସରିଗଲା, ହେଲେ ସେହିଦିନଠାରୁ ସୁରେଶ ବାବୁ ମତେ ସାର୍ ବୋଲି ଡାକିବା ଆରମ୍ଭ କରିଦେଲେ । ମୁଁ ବହୁଥର ମନାକଲି, ହେଲେ ସେ କୁହନ୍ତି- ଆପଣ ମତେ ପାଠ ପଢ଼େଇଛନ୍ତି, ମୁଁ ଆପଣଙ୍କୁ ସାର୍ ବୋଲି ଡାକିବିନି ?

ସୁରେଶ ବାବୁ ଲେଖନ୍ତି, ଆଙ୍କନ୍ତି, ଅନୁବାଦ କରନ୍ତି କଣ୍ଢେଇ କିଣିବାର ସଉକ ଆଉ ସୌନ୍ଦର୍ଯ୍ୟବୋଧ କଥା ଯିଏ ତାଙ୍କ ଘରେ ଦେଖିଛି ସେ ଜାଣିଚି । ଅଧ୍ୟୟନ ଓ ତା'ର ସମାଲୋଚନାରେ ତାଙ୍କର ଆଗ୍ରହ ଥିଲା ତଥା ସେ ଥିଲେ ଗବେଷଣାମୁଖୀ ମଣିଷଟିଏ । ପ୍ରକୃତରେ ଶ୍ରଦ୍ଧା କଲାଭଳି ମଣିଷଟିଏ ଥିଲେ ସିଏ ।

'ଶକୁନ୍ତଳା' ଚରିତ୍ରକୁ ନେଇ ନାଟକଟିଏ କରିବାର ଆଲୋଚନା ତାଙ୍କ ସାଙ୍ଗରେ ସରିଥିଲା । ସେ ଲେଖିବେ ଆଉ ମୁଁ ନିର୍ଦ୍ଦେଶନା ଦେବି, କାଳିଦାସଙ୍କର 'ଶକୁନ୍ତଳା', ବ୍ୟାସଦେବଙ୍କ 'ଶକୁନ୍ତଳା' ଆଉ ଏବେକାର ଶକୁନ୍ତଳା ଚରିତ୍ରର ପୃଷ୍ଠଭୂମିକୁ ନେଇ ମୋ ମନର କିଛି କଥା ତାଙ୍କୁ କହିଥିଲି ସେ କଥା ରହିଗଲା ।

ବହୁ ଅନୁଷ୍ଠାନ, ବହୁ କଳାକ୍ଷେତ୍ର ତଥା ବହୁ ମଣିଷଙ୍କ ସହ ନିବିଡ଼ ସଂପର୍କର ବନ୍ଧନକୁ ଫିଟେଇ ସେ ଚାଲିଗଲେ ଆଉ କୋଉ ଦୁନିଆକୁ । ଏମିତି କେତେ କଥା ଆଉ ବ୍ୟଥା ରହିଚି- କିନ୍ତୁ କଥାଟି ହଉଚି କିଏ ଏ ଦୁନିଆରେ ରହିବ, ଆଉ କୋଉ ଦୁନିଆକୁ କିଏ ଯିବ, ସେ ନିଷ୍ପତ୍ତି କାହାର ? ଯିଏ ଏ ଦୁନିଆକୁ ଆମକୁ ପଠେଇଛନ୍ତି ତାଙ୍କର- ସେ ନିଷ୍ପତ୍ତି ଉପରେ ଆଉ କାହାର କିଛି କହିବାର ଅଛି କି ?

ମୋର କିନ୍ତୁ ଗୋଟିଏ କଥା କହିବାର ଅଛି, ତା' ହେଲା- କିଛି ନ କହି, କିଛି ନ ଲେଖି, ନିରବରେ ସୁରେଶବାବୁଙ୍କୁ ଶ୍ରଦ୍ଧାରେ ସ୍ମରଣ କରି, ନିଜ ମାନସସ୍ତରରେ ଏକାକାର ହେଇ ସଂପୂର୍ଣ୍ଣ ଶରୀରରେ ସୁରେଶ ବାବୁଙ୍କୁ ଅନୁଭବ କରିବାର ବେଳ ଇଏ । ଶ୍ରଦ୍ଧାରେ ସ୍ମରଣଠୁ ଆଉ କିଛି ନାହିଁ । ■

ରଂଗକର୍ମୀ, ଭୁବନେଶ୍ୱର
ମୋ - ୯୪୩୯୩୬୪୮୫୨



# ପାଖର ମଣିଷ

## ଡ. ବିଜୟ ମହାନ୍ତି

ଶ୍ରୀ ସୁରେଶ ବଳବନ୍ତରାୟ - ମୋର ପ୍ରିୟ ସୁରେଶ ବାବୁଙ୍କ ପାଇଁ କିଛି ଲେଖିବା ଭାରି କଷ୍ଟକର। କାରଣ ପାଖରେ ପାଉନଥିବା ଜଣେ ବ୍ୟକ୍ତିଙ୍କ ଲାଗି ଅହରହ ବ୍ୟାକୁଳିତ ମନ ସହଜରେ ପାଖରେ ରହିପାରେନା। ତାଙ୍କୁ ଧରିବାକୁ ଗଲେ ଅନେକ ସ୍ମୃତି ଆସି ବାଉଳା କରେ। ବିଚଳିତ ହୁଏ ଧ୍ୟାନ ଧାରଣା। ଖାସ୍ ସେଇଥିପାଇଁ ସେ ଆଜି ଆଖିରୁ ଅନ୍ତର ହୋଇଯାଇଥିଲେ ବି ମନରେ ଅଛନ୍ତି ନିଜ ଶକ୍ତିରେ, ସ୍ୱକୀୟ ଗୁଣରେ।

ଦୁଇ ହଜାର ଛଅ ମସିହାରେ ତାଙ୍କ ସହିତ ବାନ୍ଧି ହୋଇଗଲି। ତାଙ୍କୁ ନିଜ ଭିତରେ ଧରି ରଖିଲି ମୁଁ ଆସି ଏରୋଡ୍ରମ୍ ଏରିଆରେ ନିଜ ଘରେ ରହିବା ପରେ। ଆମକୁ ଯୋଡ଼ି ଦେଇଥିଲେ ମୋର ପୁରୁଣା ସହକର୍ମୀ ବନ୍ଧୁ ଅଗ୍ରଜ ତୁଲ୍ୟ ୰ ସୌରୀନ୍ଦ୍ର ବାରିକ। ସଂପର୍କିତ ହୋଇଥିଲେ ଦିନନାଥ ପାଠୀ, ବାସୁଦେବ ସାହୁ, ପ୍ରଫୁଲ୍ଲ ଧୀର। ଆଜି ଧୀର ବାବୁ ଏବଂ ମୁଁ କେବଳ ସ୍ମୃତି ସାଉଁଟିବାକୁ ଅଛୁ- ବୟସର ପାହାଚ ଗଣି ଗଣି। କିଏ କେମିତି ପାହାଚକୁ ନ ମାପି, ନ ଗଣି କୁଆଡ଼େ ହଜିଗଲେ ଜାଣି ହେଲାନି। ଆଜିଯାଏ ବି ଭାବି ହେଉନି।

ସବୁଦିନ ସକାଳେ ଭେଟ ହୁଏ ସମସ୍ତଙ୍କର ପୁରୁଣା ଷ୍ଟେସନରେ ପ୍ଲାଟଫର୍ମରେ। ଅସରନ୍ତି କଥା ଆଉ ହସର ଢୁଆର ସୃଷ୍ଟି ହୁଏ ସେଠି। ଚକିତ ହୁଅନ୍ତି ଲୋକେ। ସୁଖ ଦୁଃଖ ବାଣ୍ଟିବା ପରେ ଚା, କଫି, ଦହି, ବିସ୍କୁଟ ପର୍ବ। ନିଜ ନିଜ ଜୀବନ କଥାରୁ ଦେଶ ବିଦେଶର କଥା ଥାଏ ଆମର ଆଲୋଚ୍ୟ ବିଷୟ। ସମସ୍ତଙ୍କ ଭିତରେ କିଛି କିଛି ସାହିତ୍ୟ ପ୍ରତି ଅନୁରାଗ, ସାଧନା ଥିବା ହେତୁ ତାହା ମୁଖ୍ୟତଃ ସାହିତ୍ୟମୁଖୀ ହୋଇଥାଏ ଅଧିକାଂଶ ଦିନ।

ଆମ ଭିତରେ ସବୁଠାରୁ ବୟୋଜ୍ୟେଷ୍ଠ ଥିଲେ ପ୍ରଫେସର ବାସୁ ବାବୁ ଏବଂ କନିଷ୍ଠ ଥିଲେ ସୁରେଶ ବାବୁ। ସ୍ନେହସୌହାର୍ଦ୍ଦ୍ୟପୂର୍ଣ୍ଣ ଆମ ଆଲୋଚନାରେ ବୟସ କେବେ ପ୍ରତିବନ୍ଧକ ସୃଷ୍ଟି କରେନା। ବେଳେବେଳେ ଚପଳତା ଏବଂ ପ୍ରଗଲ୍ଭତା ସେଠାରେ ଉପସ୍ଥିତ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରେ। ଆନନ୍ଦର ଖୋରାକ ଯୋଗାଏ। ହସିବା ଏବଂ ହସେଇବା ଭିତରେ ଯେ ଜୀବନର ଗୋଟାଏ ଅମୂଲ୍ୟ, ଅତୁଳନୀୟ ଦିଗର ଉନ୍ମୋଚନ ଘଟେ- ସେ କଥା ଆମେ ସମସ୍ତେ ଅନୁଭବ କରୁ।

ଆମେ ସମସ୍ତେ ବିଭିନ୍ନ ସାହିତ୍ୟ ଆସରରେ ଯୋଗଦେଇ ସଂପର୍କର ମଧୁର ଭାବକୁ ଆହୁରି ମଧୁମୟ କରୁ। ବାସୁ ବାବୁଙ୍କ ଛଡ଼ା ଆମେ ପାଞ୍ଚଜଣ ଥରେ ଏକାଠି ଯାଇଥିଲୁ ବନାରସ। ଯିବା ଆସିବା ରହିବା ଏବଂ ଖାଇବା ପିଇବାର ଗୋଟାଏ ନିଆରା ଅନୁଭବ ସ୍ମୃତି ହୋଇ ରହିଗଲା।

ସୁରେଶ ବାବୁଙ୍କ ସାହିତ୍ୟ ସାଧନା, ସଂଗଠନ ଦକ୍ଷତା, ଲୋକସଂପର୍କକୁ ସହଜରେ କେହି ମାପି ପାରନ୍ତିନି। ମୁଁ ମଧ୍ୟ ଆଶ୍ଚର୍ଯ୍ୟ ହେଉଥିଲି। ରଂଗ, ତୂଳୀ ଏବଂ ଲେଖନୀର ଏକନିଷ୍ଠ ସାଧକ ଥିଲେ ସେ। କଥାରେ ଏବଂ କାମରେ ଧୁରୀଣ ବ୍ୟକ୍ତିତ୍ୱ ତାଙ୍କର ପ୍ରକଟିତ ହେଉଥିଲା ପ୍ରତିଦିନ। ପ୍ରତି ମୁହୂର୍ତ୍ତ। ପ୍ରଥମ ଦେଖାରେ ହିଁ ସେ ଆପଣାର କରି ନେଉଥିଲେ ସମସ୍ତଙ୍କୁ। ଈଶ୍ୱରଙ୍କର ଏ ଶକ୍ତି ତାଙ୍କ ଭିତରେ ଜମାଟ ବାନ୍ଧି ରହିଥିଲା ସବୁବେଳେ। କେବେ ନିଜକୁ ପ୍ରକଟିତ କରିବାର ବୃଥା ଅହମିକା ମୁଁ ଲକ୍ଷ୍ୟ କରିନଥିଲି ତାଙ୍କଠାରେ।

ଅବେଳରେ ପରିବାର ଏବଂ ବନ୍ଧୁମହଲକୁ ଠକି ଦେଇ ଲୁଚି ଗଲେ ବି ମନେ ହୁଅନ୍ତି ସେ ପାଖରେ ଅଛନ୍ତି - ଖୁବ୍ ପାଖରେ। ଅତି ନିକଟରେ। ■

ପ୍ଲଟ ନଂ. ୧୬୧୯, ଲେନ୍-୯,
ଏରୋଡ୍ରମ ଏରିଆ, ଭୁବନେଶ୍ୱର



# କର୍ମମୁଖର ସବୁଜ ଓ ସତେଜ ସାହିତ୍ୟ ବ୍ୟକ୍ତିତ୍ୱ ସୁରେଶ ବଳବନ୍ତରାୟ

କୁଳମଣି ଜେନା

୧୯୭୦ ଓ ୮୦ ଦଶକରେ ଓଡ଼ିଶାରେ 'ଝଂକାର', 'ଆସନ୍ତାକାଲି' ଓ 'ନବରବି' ପତ୍ରିକା ଓଡ଼ିଶାର ସାହିତ୍ୟିକମାନଙ୍କର ବହୁପ୍ରତିଷ୍ଠିତ ମଂଚ ଭାବରେ କାର୍ଯ୍ୟ କରୁଥିଲା। ଖୁବ୍ କମ୍ ବୟସରୁ ସୁରେଶ ବଳବନ୍ତରାୟ 'ନବରବି' ଓ 'ଆସନ୍ତାକାଲି'ରେ ଲେଖିବା ଆରମ୍ଭ କରିଥିଲେ। ସାହିତ୍ୟ ବ୍ୟତିରକେ ସେ କଳା, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟରେ ରୁଚି ରଖୁଥିଲେ। ପ୍ରାଚ୍ୟ ଓ ପାଶ୍ଚାତ୍ୟ କଳା ଭାସ୍କର୍ଯ୍ୟ ସଂପର୍କରେ ସେ ହିଁ ଆମକୁ ପ୍ରଥମେ ସୂଚିତ କରାଇଥିଲେ।

'ଆସନ୍ତାକାଲି', 'ନବରବି'ରେ ତାଙ୍କ ଲେଖା ପଢ଼ି ସେ ମୋଠାରୁ ବୟସରେ ବଡ଼ ହୋଇଥିବେ ଭାବିଥିଲି। ଏଇମିତି ୨୦୦୦ ମସିହା ଯାଏଁ ତାଙ୍କୁ ମୁଁ ଲେଖାରୁ ଜାଣିଥିଲି। ୨୦୦୦ ମସିହା ପରେ ମୁଁ ଭୁବନେଶ୍ୱରରେ ରହିବା ପରଠାରୁ ତାଙ୍କ ସହ ବ୍ୟକ୍ତିଗତ ପରିଚୟ ହେଲା; ମୋଠାରୁ ବୟସରେ ବଡ଼ ବୋଲି ଯାହାସବୁ ଭାବିଥିଲି ଅସଲରେ ସେ ମୋଠାରୁ ବର୍ଷେ ଦୁଇ ବର୍ଷ ସାନ ବୋଲି ଜାଣି ତାଙ୍କ ପ୍ରତି ମୋର ଶ୍ରଦ୍ଧା ବଢ଼ିଗଲା। ସେ ମତେ କୁଳମଣି ଭାଇ ଡାକିଲେ। ତାଙ୍କ ସହ ପ୍ରାୟ ପ୍ରତିଦିନ ଦେଖା ହେଲା। ପୁରୁଣା ବସ୍‌ଷ୍ଟାଣ୍ଡ ସାହିତ୍ୟ ଖଟିର ସେ ଏକ ନମ୍ବର ବ୍ୟକ୍ତି ଥିଲେ। ମୁଁ ପ୍ରତିଦିନ ପୁରୁଣା ବସ୍‌ଷ୍ଟାଣ୍ଡ ଯାଉଥିଲି। ତାଙ୍କ ସହ କଳା ଓ ସାହିତ୍ୟ ଉପରେ ଆଲୋଚନା ହୁଏ। କଳା ଓ ସାହିତ୍ୟ ଥିଲା ତାଙ୍କ ପାଇଁ ନିଶା। ଖୁବ୍ ଅଳ୍ପ ବ୍ୟବଧାନରେ ସେ କିଛିନା କିଛି ଦାମୀ ପ୍ରକାଶନ ସହ ଉଭା ହୁଅନ୍ତି। କିଛିନା କିଛି ନୂଆ ଗବେଷଣା; ଲୋକକଳାର ଉଦ୍ଧାର କାର୍ଯ୍ୟରେ ଲାଗିଥାନ୍ତି। ଜଣେ ସାଧକ ପରି, ଗବେଷକ ପରି, ପୁରୁଣା ବସ୍ ଷ୍ଟାଣ୍ଡ୍‌ରେ ପ୍ରତି ସପ୍ତାହରେ ଥରେ କଳା ପ୍ରଦର୍ଶନୀ, ପଥପ୍ରାନ୍ତ ନାଟକ ଓ ବହି ହାଟର ଯୋଜନା କରିଥିଲେ; ଯାହା ହୋଇପାରିଲାନି ସେ ବାବଦରେ ମୋର ସକ୍ରିୟ ସହଯୋଗ କାମନା କରିଥିଲେ। ମୁଁ ହଁ ମାରିଥିଲି, ସେ ଉଲିଗଲେ। ତାଙ୍କର ସେ ଯୋଜନା ସଂପର୍କରେ ଏବେବି ମୁଁ ଭାବେ କିନ୍ତୁ ତାଙ୍କ ପରି ଲୋକ ମିଳନ୍ତିନି। ସବୁବେଳେ କର୍ମତତ୍ପର ଓ ହସ ହସ ସ୍ୱଭାବ ତାଙ୍କର ଏବେ ବି ମୋର ମନେ ପଡ଼େ ଓ ଏବେ ବି ତାହା ମୋ ପାଇଁ ପ୍ରେରଣା ସଦୃଶ ହୋଇ ରହିଛି।

ସୁରେଶ ବଳବନ୍ତରାୟ କୌଣସି ନିର୍ଦ୍ଦିଷ୍ଟ ସାହିତ୍ୟିକ ଗୋଷ୍ଠିର ସାହିତ୍ୟିକ ନଥିଲେ। ସେ ସମସ୍ତ ସାହିତ୍ୟିକଙ୍କ ସହ ସୁସଂପର୍କ ରଖୁଥିଲେ। ମୁଁ ତାଙ୍କର ମେଳାପୀ ସ୍ୱଭାବ ଓ କର୍ମମୁଖର ବ୍ୟକ୍ତିତ୍ୱକୁ ପ୍ରଶଂସା କରୁଥିଲି ଏବଂ ତାଙ୍କୁ ଆହୁରି କର୍ମକ୍ଷମ ହେବା ସକାଶେ ପ୍ରେରଣା ଦେଉଥିଲି। ସେ ମୋତେ 'ଚଉଷଠି ଯୋଗିନୀ' କାର୍ଯ୍ୟକ୍ରମକୁ ନିମନ୍ତ୍ରଣ କରିଥିଲେ। ମୋର ତାଙ୍କ ସହ 'ଚଉଷଠି ଯୋଗିନୀ' କାର୍ଯ୍ୟକ୍ରମରେ ଯୋଗଦେବା ହେଲା ନାହିଁ; ସେ ଉଲିଗଲେ। ମୁଁ ଜଣେ ପ୍ରିୟ ବନ୍ଧୁ-ସାନଭାଇଙ୍କୁ ହରାଇଲି। ଏବେ ବି ସୁରେଶ ବଳବନ୍ତରାୟଙ୍କ ସ୍ମୃତି ମୋ ଭିତରେ ସତେଜ। ଏବେ ବି ସେ ମୋ ସମ୍ମୁଖରେ କର୍ମମୁଖର ମଣିଷ ଭଳି ନାଚି ଉଠନ୍ତି। ତାଙ୍କର ସ୍ମୃତିକୁ ପାଥେୟ କରି ଆମେ ଆଗକୁ ଯିବା ତାଙ୍କରି ପରି କର୍ମମୁଖର ସତେଜ ମଣିଷର ଭୂମିକା ନିର୍ବାହ କରି। ❑

୨୮୫, କଟକ ରୋଡ଼, ଭୁବନେଶ୍ୱର-୬
ମୋ - ୮୦୯୩୯୩୭୭୪୮



# ସୁରେଶ ଭାଇଙ୍କ ସହ ମୋ/ଆମ ଜୀବନର ସ୍ୱଷ୍ଟ ପୃଷ୍ଠା କେତୋଟି

## ସୁବୋଧ ପଟ୍ଟନାୟକ

ନିଜକୁ ନିଜର ଢୋଲ ପିଟି ପରିଚୟ ଦେବା ବା ନିଜର ପରିଚୟକୁ ପ୍ରସାର କରିବାକୁ ବ୍ୟସ୍ତ ହେବା ଗୁଣ ନଥିବାରୁ, ଆମେ ତାଙ୍କୁ ଜାଣି ନଥିଲୁ । କିନ୍ତୁ ସେ ନିଜେ ତାଙ୍କ ଆଡୁ ଆଗ୍ରହୀ ହୋଇ ଆମ ସହ ସଂଯୋଗ ସୃଷ୍ଟି କଲେ ଓ ସମ୍ପର୍କ ବଢ଼ାଇଲେ । ପରିଚୟ ପାଇବାପରେ ଲାଗିଲା ସତରେ ଆମେ ଜାଣି ପାରୁଥିବା ଗୁଣବାନ ବ୍ୟକ୍ତି ସିଏ ନା, ଆମର ତାଙ୍କୁ ଚିହ୍ନିବାରେ ଭୁଲ ହେଇଯାଉଚି । କାରଣ ସେତିକି ଗୁଣବାନ ଲୋକଟିଏ ଏ ଯୁଗରେ ଆମେ ପାଇନାହୁଁ, ଯିଏ ନିଜକୁ ଆମ ସହ ଯୋଡ଼ିହେବାକୁ ଆଗ୍ରହୀ ହୋଇ ଆମ ପାଖକୁ ବାରମ୍ବାର ଆସିବ । ଏଇ ନମ୍ରତା ତାଙ୍କ ବୌଦ୍ଧିକ ଗୁଣକୁ ଆହୁରି ଅଧୀକ ଓଜନିଆ କରିଦିଏ । ଗୁଣ ଚିହ୍ନେ ଗୁଣିଆ । ସେ ଗୁଣି ହୋଇଥିବାରୁ ଅନ୍ୟର ଗୁଣକୁ ଆବିଷ୍କାର କରି ପାରନ୍ତି, ହେଲେ ନିଜଠୁ ଅନ୍ୟକୁ ଅଧୀକ ଗୁଣବାନ ବୋଲି ଭାବନ୍ତି ।

କାହାକୁ ଜୋର୍‌ରେ ସାମନାରେ ପଦେ କହିବାକୁ ପସନ୍ଦ କରୁନଥିଲେ ସେ । କିନ୍ତୁ ତାଙ୍କ ନା – "ବଳବନ୍ତରାୟ" । ଘର ତାଙ୍କର ଖୋରଧା ପାଇକ ଅଂଚଳରେ । ଏହା ସେଇ ଅଂଚଳ, ଯାହାର ଗଡ଼କୁ ଇଂରେଜମାନେ ଭାରତକୁ କବ୍ଜା କରିବାବେଳେ ଏଠାର ଘୋର ସଶକ୍ତ ପ୍ରତିରୋଧ ପରେ ସବାଶେଷରେ ହିଁ ଅକ୍ତିଆର କରିପାରିଲେ । ସଂଗ୍ରାମୀ ବକ୍ସିଙ୍କ ଜାଗାର ମଣିଷ ସେ । ମନେପଡ଼େ ତାଙ୍କୁ ଥରେ କହିଥିଲି – "ସୁରେଶ ଭାଇ, ଆପଣ ମତେ କଥା କହିଲାବେଳେ ମୁହଁକୁ ନ ଚାହିଁ ପାରମ୍ପରିକ ରାଜାରାଜୁଡ଼ା ସମୟର ଆଚରଣରେ ଗୁରୁଜନଙ୍କୁ କଥା କହିଲା ପରି ତଳକୁ, ନହେଲେ ଅନ୍ୟ ସାନମାନଙ୍କର ମୁହଁକୁ ଚାହିଁ କାହିଁକି କଥା କହୁଚନ୍ତି । ଆପଣ ମୋ'ଠୁ ବଡ଼ । ଯଦି ସମ୍ମାନ ଦେବାକୁ ମୁହଁକୁ ନ ଚାହିଁ କଥା କହିବା ପ୍ରଥାକୁ ଆପଣେଇବାର ହୁଏ, ତେବେ ମୋର ଆପଣଙ୍କ ମୁହଁକୁ ନ ଚାହିଁ କଥା କହିବା ଉଚିତ ।" ସେ ନମ୍ରତାର ସହ ଉତର ଦେଇଥିଲେ – ଏହା ତାଙ୍କ ଘରର ବହୁ ପୁରାତନ ପାରମ୍ପରିକ ପ୍ରଥା । ତାହା ଏତେ ଶିଘ୍ର ବଦଳିବା ସମ୍ଭବ ନୁହେଁ । ତେଣୁ ଆମ ସାମନାରେ ଗୋଟେ ପଟେ – ଏଇ ପ୍ରକାର ସମ୍ମାନ ଦେଖେଇବାର ପ୍ରଥାରୁ ମୁକ୍ତ କରି ଆମ ସମାଜକୁ ସମାନ ଅଧୀକାର ବା ସାମ୍ୟବାଦର ସମାଜ ଗଡ଼ିବାର ଶପଥ, ଅଥଚ ଏ ଜମିଦାରୀଆ ସମୟର ଆଚରଣ ଛାଡ଼ିବାକୁ ବେଶି ଜିଦ୍ କଲେ ସୁରେଶଙ୍କ ସହ ସମ୍ପର୍କ ହରେଇବାର ଆଶଙ୍କା । ଏଭିତରୁ ଆମେ ତାଙ୍କ ପରି ଜଣେ ଗୁଣି ଲୋକଙ୍କୁ ନ ହରେଇବାକୁ ବାଛି ନେବାକୁ ହେଲା ଓ ସୁରେଶଭାଇଙ୍କର ମୋ ଆଖିକୁ ଆଖି ନ ମିଶାଇ କଥା କହିବାକୁ, ଜଣେ ସାନ ହେଇ ମଧ୍ୟ ଓ ତାଙ୍କଠୁ କମ ଗୁଣର ହେଇ ମଧ୍ୟ ସହିବାକୁ ହେଲା । ତାଙ୍କର ଆମକୁ ପରାସ୍ତ କରିବାର ଅସ୍ତ୍ର ଥିଲା କେବଳ ତାଙ୍କର ନମ୍ରତାର ବଳ । ତେଣୁ ସେ ଜଣେ – "ନମ୍ର-ବଳବନ୍ତରାୟ" ।

ସେଇ ନମ୍ରତାରୁ ତାଙ୍କ ଭିତରେ ଜନ୍ମ ନେଇଥିଲା ଜଣେ ଭଲ ଛାତ୍ର ହେବାର ଆଚରଣ । ସେ ଅନ୍ୟ ଠାରୁ ଶିଖିବାରେ କୁଣ୍ଠାକରୁନଥିଲେ । ବୟସରେ ଛୋଟ ହେଉ ବା ପାଠରେ ଛୋଟହେଉ, ସମସ୍ତଙ୍କ ଗୁଣ ଚିହ୍ନିବା ଓ ତାଙ୍କଠୁ ଶିଖିବା ତାଙ୍କର ଉଦ୍ଦମ । ପ୍ରାୟ ଗୁଣିମାନେ ଅନ୍ୟକୁ ଶୁଣିବାର କ୍ଷମତା ଧୀରେ ଧୀରେ ହରେଇଥାନ୍ତି । କିନ୍ତୁ ସେ ଖୁବ ଧର୍ଯ୍ୟର ସହ ଅନ୍ୟକୁ ଶୁଣି ପାରନ୍ତି । ତାଙ୍କ ସହ ଆମ ପରିଚୟ ସେତେବେଳେ, ଯେତେବେଳେ ସେ ଜଣେ –ଲେଖକ, କବି, ପ୍ରାବନ୍ଧିକ, ଅନୁବାଦକ,

ନାଟ୍ୟକାର, ସାହିତ୍ୟିକ, ଭାଷା-ବ୍ୟାକରଣବିତ୍, ଚିତ୍ରକର, ସୃଜନଶୀଳ ସାଜସଜ୍ଜା ପ୍ରିୟ ବ୍ୟକ୍ତି ଭାବେ ଜଣାପଡ଼ି ସାରିଥିଲେ । ତଥାପି ସେ ନାଟ୍ୟଚେତନାର ସ୍ୱତନ୍ତ୍ର ଚିନ୍ତା, ପରିକଳ୍ପନା, ଯୋଜନା ଅନ୍ୟ ମାନଙ୍କଠାରୁ ଅଲଗା ହୋଇଥିବାରୁ, ତାହା ଜାଣିବାକୁ ଆଉ ବୁଝିବାକୁ ଅନେକ ସମୟ ଦେଇଛନ୍ତି । ନିଜ ଚାକିରିରୁ ଛୁଟି ନେଇ ଆମର ନାଟ୍ୟଯାତ୍ରାରେ ସାମିଲ ହୋଇ ଜଣେ ପ୍ରମାଣ ରକ୍ଷକର ଦାୟୀତ୍ୱ ନେଇ ପ୍ରାୟ ୧୫-୨୦ ଦିନ ବୁଲିଛନ୍ତି । ନାଟକ ଅଭ୍ୟାସ ସମୟରେ ବସିଚନ୍ତି । ଆମ ବିଷୟରେ ଗବେଷଣା ଭିତିକ ଲେଖା ସବୁ ଇଂରାଜୀରେ ଲେଖିଚନ୍ତି । ଆମର ଅନେକ ଇଂରାଜୀ ରିପୋର୍ଟ ଲେଖିଚନ୍ତି । ସେଥିଲାଗି ଆମେ ତାଙ୍କୁ ଏଥି ଲାଗି ଟଂକାଟିଏ ବି କେବେ ଦେଇନୁ । ସେ ସଦାବେଳେ ଆମ ସହ ଆମ କାମରେ ଯୋଡ଼ି ହେଉଥିଲେ ସତେ ଯେମିତି ଏହା ତାଙ୍କର କର୍ତବ୍ୟ । ଶେ ଆମ ପରିବାରର ଜଣେ ଥିଲେ । ଜଣେ ସ୍ୱେଚ୍ଛାସେବକର ଗୁଣ କଣ, ତାଙ୍କଠୁ ଶିଖିବା ଉଚିତ ବୋଲି ଆମ ଭିତରେ ଅନେକ ଥର କଥା ହୁଏ । ତାଙ୍କ ପରି ସ୍ୱଇଚ୍ଛାରେ ଝାସଦେବା ମଣିଷ ମାନଙ୍କ ଯୋଗୁଁ ହୁଏତ ଶହଶହ ବର୍ଷର ଲୋକ-ନାଟ ଗାଁ ଗାଁରେ ଆଜି ଯାଏଁ ବଂଚି ରହିଚି ।

ତାଙ୍କ ଜୀବନର ସବୁଠାରୁ ବଡ଼ ଅନ୍ତର୍ଦ୍ୱନ୍ଦ ହୁଏତ ଏହା ଥିଲା ଯେ - ସେ ଜଣେ ମାନସବାଦୀ ଓ ଜ୍ଞାନର ଆଦାନ ପ୍ରଦାନକାରୀ ମଣିଷ । ଅଥଚ ତାଙ୍କର ପେଷା ହେଲା – ଏମିତି ଏକ କେନ୍ଦ୍ରୀୟ ସରକାରୀ ବିଭାଗରେ ଯାହାକୁ ଜଣେ ନିଜର ପାର୍ଥୀବ ଧନସମ୍ପତି ଓ ମଉଜ ମଜଲିସ ବଢ଼ାଇବାକୁ ଅପେକ୍ଷା କରେ ଓ ଅନେକ ସୁଯୋଗଥାଏ ବୋଲି କୁହାଯାଏ । ଏଥିଲାଗି ତାଙ୍କ ପରି ଅଫିସର ମାନେ, ନିୟମ ଜାହିର କଲା ପରି ସ୍ଥାନ, ଯେଉଁଠି ଧନୀକଲୋକେ ପହଂଚନ୍ତି, ସେପରି ସ୍ଥାନ ଯୋଗାଡ଼ କରନ୍ତି । କିନ୍ତୁ ଜାଣି ଶୁଣି ନିଜକୁ କିରାଣୀଟିଏ ପରି ମୁଖ୍ୟ ଅଫିସରେ ରହି କେବଳ ଫାଇଲ ଚାଷ କରି ପେଟ ପୋଷିବାକୁ ପସନ୍ଦ କରୁଥିବା ସଚ୍ଚୋଟ ବୋକା ଅଫିସର ଭାବେ ସେ ବିଭାଗରେ ସୁରେଶଭାଇ ପରିଚିତ । ତେବେ ସେଇ ବିଭାଗରେଥିବା ସାହିତ୍ୟିକ ବା କଳାପ୍ରେମୀ ଉଚ୍ଚ ଅଫିସର ମାନଙ୍କ ସହ ତାଙ୍କର ଭଲ ସମ୍ପର୍କ ଓ ସେମାନେ ତାଙ୍କର ଏହି ବୋକାମୀ ଓ ସଚ୍ଚୋଟତା ଲାଗି ପ୍ରଶଂସା କରନ୍ତି । ମୁଖ୍ୟ ଅଫିସରେ ତାଙ୍କ ଚୌକିର ଶକ୍ତିଥିଲେ ବି ସେ କେବେ ତାର ବ୍ୟବହାର କରିନାହାନ୍ତି । ଯଦି କେହି ତାଙ୍କୁ ଭେଟିବାକୁ ତାଙ୍କ ଅଫିସକୁ ଯିବ, ତେବେ ସେଠାର ଅନ୍ୟମାନଙ୍କ ସହ ତାଙ୍କ ସମ୍ପର୍କରୁ ଜାଣିପାରିବେ ଯେ ତାଙ୍କୁ ସମସ୍ତେ ଜଣେ ନିରିହ ପ୍ରାଣୀ ଭାବେ ଗ୍ରହଣ କରିନେଇଛନ୍ତି ଓ ସମସ୍ତେ ତାଙ୍କୁ ଭଲ ପାଆନ୍ତି । ସେ ଜଣେ ଅନ୍ୟକୁ ଅସରନ୍ତି ଦେବାର ମଣିଷ, ଅଥଚ କେବଳ ଅନ୍ୟଠୁ ନେବାର ପ୍ରଥାଥିବା ପେଶାରେ ସେ ନିଯୁକ୍ତ । କି ବିଡ଼ମ୍ବନା ! ମୋର ମନେ ହୁଏ, ସେ ଯଦି ଏଇ ପ୍ରକାର ଅନ୍ତର୍ଦ୍ୱନ୍ଦରୁ ମୁକ୍ତ କୌଣସି ବ୍ୟବସ୍ଥାରେ ଥାନ୍ତେ, ତେବେ ହୁଏତ ସେ ଅକାଳରେ ଆମଠୁ ଚାଲି ଯାଇ ନଥାନ୍ତେ ।

ଆମେ ନାଟ୍ୟଚେତନା ତରଫରୁ ତାଙ୍କଠୁ ବି ଅନେକ କିଛି ପାଇଛୁ ଯାହାର ହିସାବ ଦେଇ ହେବନି । ହୁଏତ କେତେଟା ଉଦାହରଣ ଦେବା ଉଚିତ ହେବ । ସେ ନାଟ୍ୟଚେତନା ଦ୍ୱାରା ପ୍ରକାଶ ପାଉଥିବା - ନାଟ୍ୟସ୍ୱରର ସମ୍ପାଦନା ଦିର୍ଘ ଦିନ ଧରି କରୁଥିଲେ । ତାଙ୍କର ଇଂରାଜି ଦକ୍ଷତା ଯୋଗୁଁ - ଅନେକଥର ନାଟ୍ୟଚେତନା ବାବଦରେ ବିଭିନ୍ନ ପତ୍ର-ପତ୍ରିକାରେ ଲେଖିଥିଲେ ଯାହା ଆମର ପରିଚୟ ଓଡ଼ିଶା ବାହାରେ ପ୍ରସାରିତ କରିଥିଲା । ତାଙ୍କର ବଙ୍ଗାଳୀ ଭାଷାରେ ଦକ୍ଷତା ଥିଲା ଯେଉଁଥିଲାଗି – ମନୋଜ ମିତ୍ରଙ୍କ ପରି ଦେଶବ୍ୟାପି ପରିଚିତ ନାଟ୍ୟକାରଙ୍କ ନାଟକକୁ ସେ ଅନୁବାଦ କରିଥିଲେ । ମନୋଜ ମିତ୍ରଙ୍କ ସହ ପରିଚୟ ବି ଥିଲା । ଏମିତ ହୋଇଥିଲା ଯେ ମନୋଜ ମିତ୍ର ଥରେ ଓଡ଼ିଶା ଆସିଥିଲେ ଓ ତାଙ୍କୁ ପ୍ରବର୍ତାଇ ସେ ନାଟ୍ୟଚେତନାର ନାଟ୍ୟଗ୍ରାମ ଆମ ମାନଙ୍କ ଅନୁପସ୍ଥିତିରେ ବୁଲାଇ ନେଇଥିଲେ । ସେମିତି କଲିକତାର କଫି ହାଉସ୍ ଦେଖି ଭୁବନେଶ୍ୱରରେ ପୁରୁଣା ବସଷ୍ଟାଣ୍ଡରେ ଖଟି ବା ବଳକା ସମୟ କାଟିବାକୁ ଏକାଠି ହେଉଥିବା ସାହିତ୍ୟିକ ମାନଙ୍କୁ ପ୍ରତି ମାସରେ ଥରେ ଏକତ୍ର ବସି ଜଣକୁ ଶୁଣିବାର ଅଭ୍ୟାସ କରାଇଥିଲେ । ଥରେ କଫି ହାଉସ ସଂଶ୍ଳିଷ୍ଟ ସମସ୍ତଙ୍କୁ ନେଇ ପୁରା ଦିନଟିଏ ନାଟ୍ୟଗ୍ରାମରେ କଟେଇବାକୁ ବୁଲାଇନେଲେ । ଏହା ଅନେକଙ୍କ ଲାଗି ଏକ ସ୍ମରଣିୟ ଦିନ ହୋଇ ଆଜିବି ରହିଚି ଏବଂ ନାଟ୍ୟଚେତନା ବାବଦରେ ଥିବା ଅନେକ ଭୁଲ ଧାରଣାକୁ ଦୂର କରିପାରିଛି । ଏମିତି ଅନେକ ତାଙ୍କର ଦାନରେ ଆମେ ଧନୀ ହେଇଛୁ ।

ତାଙ୍କର ଥରେ ମାତ୍ର କିଛି ପାଇବାକୁ , ଗୋଟିଏ ଦୁଃଖ ଅଭିମାନ ଛଳରେ ସେ କହିଥିଲେ- ଯେଉଁଥିଲାଗି ଏବେବି ମନ ଖୁବ୍ ପସ୍ତାଏ। ଲାଗେ ଯଦି ଭଗବାନ ପୁଣି ଦିନ ସବୁକୁ ପଛେଇ ନେଇ ନିଜର ଭୁଲସବୁକୁ ଠିକ୍ କରିବାର ସୁଯୋଗ ଦିଅନ୍ତେ ତେବେ ତାଙ୍କର ସେଇ ପ୍ରାପ୍ୟଦେଇ ଋଣ ମୁକ୍ତ ହେବାକୁ ଇଚ୍ଛା ହୁଅନ୍ତା । ତାହା ହେଲା - ୨୦୦୦ ମସିହାରେ ନାଟ୍ୟଚେତନା ତରଫରୁ ୩୦ଟି ବାଦ୍ୟ ଯନ୍ତ୍ରର ଏକ ଗବେଷଣା କରିବାର ଓ ଏକ ସଂଗ୍ରହାଳୟ କରିବାର ଏକ ଉଦ୍ଦମ

ହୋଇଥିଲା । ଯେଉଁ ସଂସ୍ଥା ଏଥିଲାଗି ଆର୍ଥିକ ସହଯୋଗ କରିଥିଲା ସେଥିରେ ନାଟ୍ୟଚେତନାର ସଂଗୀତ ନିର୍ଦ୍ଦେଶକ ତାର ଦାୟୀତ୍ୱ ନେବାର ପ୍ରସ୍ତାବ ଲେଖା ଯାଇଥିଲା । ଗବେଷଣା ଶେଷ ହେଲା । ତେବେ ତାକୁ ଏକ ପୋଥୀ ଭାବେ ପ୍ରକାଶ କାଲା ବେଳେ ଭାବିଲୁ ସୁରେଶ ଭାଇଙ୍କ ଛଡ଼ା ଆଉ କେହି ଦିଶୁ ନାହାନ୍ତି ଯିଏ ଏହି ଗବେଷଣା ଲବ୍ଧ ତଥ୍ୟକୁ ନେଇ ଆଣି ଥୋଇପାରିବ । ସେତେବେଳକୁ ସଂଗୀତ / ନୃତ୍ୟ ସମ୍ପର୍କୀତ ଗବେଷଣାରେ ସେ ଛଦ୍ମ-ଲେଖକ ହୋଇ ଅନେକ କଳାକାରଙ୍କୁ ସାହାଯ୍ୟ କରୁଥାନ୍ତି। ତେଣୁ ଏଇ ଦାୟୀତ୍ୱ ବି ସେ ନେଲେ । ଏହା ଏକ ଦୁଇ-ଭାଷା (ଇଂରାଜୀ ଓ ଓଡ଼ିଆ) ପୁସ୍ତକ ଭାବେ ପ୍ରକାଶିତ ହେଲା । ହେଲେ ଏହାର ଘୋଷଣାନାମାରେ ତାଙ୍କୁ ଜଣେ କେବଳ ଉପଦେଷ୍ଟା ଭାବେ ପ୍ରକାଶ କରାଗଲା । କାରଣ ଆମର ଜଣେ ପୂର୍ଣ୍ଣ ସମୟଦାତା ହିଁ ଏଇ ଗବେଷଣା କରିଥିଲା ଓ ଏହି ପ୍ରକଳ୍ପର ଦାୟୀତ୍ୱରେ ଥିଲା ବୋଲି ଅର୍ଥଦାନକାରି ସଂସ୍ଥାଠାରେ ସାବସ୍ତ୍ୟ କରିବାର ଥିଲା । ତେଣୁ ଏକ ଅପରିପକ୍ୱ ମାନସିକତାରେ ତାଙ୍କ ଅବଦାନର ଯଥାଯଥ ପ୍ରକାଶ କରିବାର ଭଙ୍ଗୀ ନ ଜାଣି ତାଙ୍କ ପ୍ରତି ଆମର ଇଚ୍ଛା ବିରୁଦ୍ଧରେ ଏକ ଅନ୍ୟାୟ କରାଯାଇଥିଲା ବୋଲି ସ୍ୱୀକାର କରିବାରେ କୁଣ୍ଠା ନାହିଁ । ନାଟ୍ୟଚେତନା ତରଫରୁ ତାଙ୍କ ପ୍ରତି ହୋଇଥିବା ଏହି ଅନ୍ୟାୟ ତାଙ୍କୁ ଅସମ୍ମାନ କଲା ପରି ଲାଗିଲା, କାରଣ ସେ ବେଶ୍ କିଛି ସମୟ ଦେଇଥିଲେ ଯାହା ଓଡ଼ିଶା ଇତିହାସରେ ପ୍ରଥମ ପ୍ରମାଣ ଭିତିକ ବାଦ୍ୟଯନ୍ତ୍ର ଉପରେ ଏକ ପୁସ୍ତକ ଥିଲା । ଏହି ଦୁଃଖ ସେ ପ୍ରକାରାନ୍ତରେ ପ୍ରକାଶ କଲେ । ହେଲେ ସେ ଏହାକୁ ନେଇ ଚହଳ ପକେଇ ଆମକୁ ଅସମ୍ମାନିତ କରି ନାହାନ୍ତି । ତେଣୁ ଅଆମର ଏଇ ଭୁଲ ଲାଗି ତାଙ୍କଠାରୁ କୌଣସି ଦଣ୍ଡ ପାଇନଥିବାରୁ, ଆମ ମନ ଭିତରେ ସେଇ ପଶ୍ଚାତାପ ଜମାଟ ହୋଇ ରହିଗଲା । ଏବେ ଲାଗୁଚି, ସେ ହୁଏତ ଏମିତି ଅନେକ ଅନ୍ୟାୟର ଶୀକାର ହୋଇ ଯଥାମାନ୍ୟ ସମ୍ମାନ ନପାଇ ଅଧୀକରୁ ଅଧୀକ ଦୁଃଖୀ ହୋଇଗଲେ ଓ ସେଇ ଅଭିମାନରେ ଆମକୁ ଧୀକ୍କାର କରି ଆମମାନଙ୍କଠାରୁ ଦୂରେଇଗଲେ ।

ବିଦେଶଗସ୍ତରେ ଗଲେ – ସେଠାକାର ଦୁଇଟି ଜିନିଷ ପାଇବାକୁ ତାଙ୍କର ଅପେକ୍ଷା ଥାଏ ଓ ତାହା ପୂରଣ କରିବାକୁ ଖୁବ୍ ଚେଷ୍ଟା କରାଯାଏ । ସେ ଦୁଇଟି ହେଲା – ଗୋଟିଏ କଲମ ଓ ସେ ଦେଶର ଗୋଟିଏ ଛୋଟ କଣ୍ଢେଇ । କାରଣ ସେ ଲେଖନ୍ତି ଓ କଣ୍ଢେଇ ସଂଗ୍ରହ କରନ୍ତି । ଏଇ ଦୁଇ ଲକ୍ଷ୍ୟରେ ନିଜକୁ ସେ ହଜେଇ ଦେବାକୁ ଚାହିଁଥିଲେ । ଆମର ପୁରା ବିଶ୍ୱାସ – ତାଙ୍କ ନାମଧାରୀ ଲେଖା ଯେତିକି ଅଛି, ତାଠୁ ଅନେକ ଅଧୀକ ଲେଖା ତାଙ୍କ ନାମ ନଥାଇ ଆମ ଚାରିପଟେ ବୁଲୁଛି, ପ୍ରକାଶ ପାଇଛି, ଅନ୍ୟକୁ ସମ୍ମାନିତ କରିଛି, ସାହିତ୍ୟ ଓ ଗବେଷଣାରେ ଯୋଡ଼ି ହେଇଯାଇଛି । ସେମିତି ତାଙ୍କ ବ୍ୟକ୍ତିଗତ ଉଦ୍ଦମରେ ହୋଇଥିବା- କଣ୍ଢେଇ ସଂଗ୍ରହାଳୟ । ସେ ସବୁର ଥଇଥାନ କରିବାକୁ ବି ବାକି ଅଛି । ନହେଲେ ସେଇ କଣ୍ଢେଇମାନେ ନିଜକୁ ଅନାଥ ଭାବୁଥିବେ । ସେମାନଙ୍କ ମାଧ୍ୟମରେ ପାରାମ୍ପରାର ପ୍ରମାଣ ଓ ଜ୍ଞାନ ବି ଅଟକିଯିବ । ଅଆମେ ଜାଣି ଯେ ଏ ବାବଦରେ ସୁରେଶଭାଇଙ୍କ ସମ୍ପୃକ୍ତ ଅନେକଙ୍କ ବ୍ୟସ୍ତତା ରହିଚି ।

ତାଙ୍କର ନମ୍ରତା, ନିଜର ଜ୍ଞାନକୁ ନିଜ ଭିତରେ ବଢ଼ାଇ ଅନ୍ୟକୁ ବାଂଟିବା, ଅନ୍ୟକୁ ଉଠାଇବାରେ ସହଯୋଗ, ଭୋଗୀ ନ ହୋଇ ତ୍ୟାଗୀ ହେବା ପରି ଅନେକ ଭଲ ଗୁଣ ନେଇ ତାଙ୍କ ଉତରଦାୟାଦ (ପୁଅ ଝିଅ)ମାନେ ବଂଚୁଛନ୍ତି । ସୁରେଶଭାଇ ସେମାନଙ୍କ ଭିତରେ ଦୃଶନ୍ତି । ଛୁଆ ମାନଙ୍କ ଭିତରେ ସେ ଯେମିତି ଅଛନ୍ତି ସେମିତି ଲୁଚିରହି ଦୀର୍ଘଜିବୀ ହୁଅନ୍ତୁ । ତେବେ – ସେ ନିଶ୍ଚେ ଜାଣିଥିବେ ଯେ - ତାଙ୍କ ସହ ଦିନେ ଆମର ଦେଖା ହେବ । ହୁଏତ ଏ ପୃଥିବୀରେ ନୁହେଁ, ସେଇଠି ଯେଉଁଠିକୁ ସେ ଯାଇଛନ୍ତି ଓ ସେଠିକୁ ଯିବାକୁ ଆମ ଯିବାର ପାଳି ଦିନେ ପଡ଼ିବ । ସେଇଠୁଥାଇ ପୁଣି ଏ ସମାଜକୁ ରାସ୍ତା ଦେଖାଇବାକୁ ଉଦାହରଣ ସୃଷ୍ଟି କରିବାକୁ ହେବ । ଆମ ପରପିଢ଼ିର ପିଠି ଥାପୁଡ଼େଇବାକୁ ହେବ ।

ତାଙ୍କ ସହ ସମ୍ପର୍କର ବିରାଟ ପୋଥୀରୁ ଏଇ ଦୁଇ ଚାରି ପୃଷ୍ଠ-ପୃଷ୍ଠା ଉଦ୍ଧାର କରିବାକୁ ଚେଷ୍ଟା କଲାବେଳେ ସୁରେଶଭାଇଙ୍କ ଅନୁପସ୍ଥିତି ଅନୁଭବ ହେଉଛି । କାରଣ ଅନେକ ଦିନ ଧରି ପ୍ରାୟ ସବୁ ଲେଖାର ସଂପାଦନା ସେ କରୁଥିଲେ । ଏବେ ଏ ଲେଖାର ବ୍ୟାକରଣ/ଭାଷାଗତ ତ୍ରୁଟିକୁ ସଂଶୋଧନ କରିବ କିଏ ? ତେଣୁ ଏଥିରେ ତଥ୍ୟ ଛାଡ଼ିଦେଲେ ଅନ୍ୟ ଯାହା ତ୍ରୁଟିଥିବ ସେଥିଲାଗି ସୁରେଶଭାଇ ଦାୟୀ ରହୁଥିଲେ ଓ ଏବେ ବି ଦାୟୀ ରହିବେ ବୋଲି ଆଶା । ଏତିକି ହିଁ ତାଙ୍କ ପ୍ରତି ପାରିବାରିକ ଶ୍ରଦ୍ଧା ।

ନାଟ୍ୟ ଚେତନା

୧୫-୧୦-୨୦୧୯



# ଅନୁସନ୍ଧିତ୍ସୁ ବଳବନ୍ତରାୟ

ଗନ୍ଧର୍ବସେନ ରଣା

ସୁରେଶ ବାବୁ ଓ ଲେଖକ ସମସାମୟିକ। ନିୟମ ଦୃଷ୍ଟିରୁ। ମାତ୍ର ସହକର୍ମୀ ନୁହେଁ। ସେ ଆୟକର ଭବନ, କେନ୍ଦ୍ର ସରକାରଙ୍କର କର୍ମଚାରୀ ଓ ଲେଖକ ନିଜେ ରାଜ୍ୟ ସରକାରଙ୍କ ସଚିବାଳୟର କର୍ମଚାରୀ। ହେଲେ ବି ଆମ ଦୁହିଁଙ୍କର ପ୍ରାୟତଃ ଭେଟ ହୁଏ ରାଜଧାନୀର ଏକ ପ୍ରମୁଖ ଛକିରେ, ଯେଉଁଠି ସାହିତ୍ୟିକ, ଲେଖକ, ଚିତ୍ରକର, କଳାକାର, ପ୍ରକାଶକ, ସାମ୍ବାଦିକମାନଙ୍କ ଭେଟ ହୁଏ। ଯତ୍ ସାମାନ୍ୟ ସାଂପ୍ରତିକ ଆଲୋଚନା ହୋଇ, ପାଟିତୃଷ୍ଣ ହୋଇ, ଦୁଇ ନମ୍ବର ବସ୍‌ଷ୍ଟାଣ୍ଡର ଚା' ଦୋକାନରେ ଆପ୍ୟାୟିତ ହୋଇ ନିଜ ନିଜ ବସାଘର ଅଭିମୁଖେ ଅଗ୍ରସର ହୋଇଥାଉ ସଭିଏଁ।

ବାସ୍ତବରେ ଏକ ଅଭୁଲା ସ୍ମୃତି ସେସବୁ। କିପରି ସମୟ ଅତିବାହିତ ହୋଇଯାଏ ଜଣାପଡ଼େନି। ଖୁବ୍ କମ୍ ସମୟ ହେଲେ ବି ପରିବେଶଟା ଚଳଚଞ୍ଚଳ ହୋଇଯାଏ। ସିଗାରେଟ୍ ଧୂଆଁର ପୁଳାପୁଳା ଧୂଆଁ ଅପସରି ଯିବାଯାଏ। ସେଇ ଅଭୁଲା ସ୍ମୃତି ଆଜି ରୋମନ୍ଥିତ ହୋଇପଡୁଛି, ବନ୍ଧୁ ସୁରେଶଙ୍କୁ ଚିହ୍ନାଇ ଦେଇଥିଲେ ଛକିର ଦୁର୍ବାସାସମ ସାହିତ୍ୟିକ ସ୍ୱର୍ଗତ କୈଳାସ ତ୍ରିପାଠୀ।

ବାସ୍, ନିଇତି ନହେଲେ ବି ସପ୍ତାହକୁ ଦୁଇଥର ଭେଟ ହୁଏ। ଦୁଇ ରାଜ୍ୟ ସରକାରଙ୍କ ନିତିନିୟମଠୁ ଆରମ୍ଭ କରି ସ୍ୱ ସ୍ୱ ପାରଦର୍ଶିତା ନେଇ କଥୋପକଥନ ହେଉ। ଖୁବ୍ ସରଳ ସ୍ୱଭାବ, ନମ୍ର ବ୍ୟବହାର ତାଙ୍କର ପ୍ରତିଟି ବାକ୍ୟରେ, ସମସ୍ତ ପ୍ରାସଙ୍ଗିକ ତତ୍ତ୍ୱରେ। ବାସ୍ କିଛି କଥା ଦିଆନିଆରେ ମେଲାଣି ନେଉ ଉଭୟେ। ସେ ଗାଡ଼ି ଗଡ଼ାନ୍ତି ପୁରୁଣା ଭୁବନେଶ୍ୱରକୁ ତ ଲେଖକ ଆଗେଇ ଯାଆନ୍ତି ଆଠ ନମ୍ବର ଆଡ଼କୁ।

ସହସା ଦିନେ କଥା ପ୍ରସଙ୍ଗରେ ଜଣାପଡ଼ିଲା ସୁରେଶବାବୁ ଜଣେ ଭଲ ଚିତ୍ରକର। ଇଂରାଜୀ ଭାଷାରେ ଯେପରି ଦକ୍ଷତା, ସେଇଭଳି ଚିତ୍ରରେ, ତୂଳି, ରଙ୍ଗ, କଲମ, ପେନ୍‌ସିଲ ଯାହାବି ହେଉ। ଲେଖକ ଦିନେ ପ୍ରସ୍ତାବ ଦେଲେ ଚଉଷଠି ଯୋଗିନୀ ମହୋତ୍ସବରେ ପ୍ରମୁଖ ଆୟୋଜକଙ୍କ ଭିତରୁ ଜଣେ ଥିଲେ ବୋଲି ଜାଣିବାରେ ସୁରେଶ ବାବୁ। ଗୋଟାଏ କାମ କରନ୍ତୁ, ଆପଣ ୧୩୨ ପୃଷ୍ଠାର ବହିଟିଏ କରନ୍ତୁ। ଛରିପୃଷ୍ଠା ରଖିବେ ମୁଖବନ୍ଧ, ଆଉ ଚଉଷଠି ଯୋଗିନୀଙ୍କ ପାଇଁ ଦୁଇ ପୃଷ୍ଠା ଲେଖାଏଁ ପ୍ରତ୍ୟେକଙ୍କୁ ନେଇ। ପ୍ରଥମ ପୃଷ୍ଠାରେ ଯୋଗିନୀ ଜଣଙ୍କର କ୍ୟାମେରାରେ ଆବଦ୍ଧ ହୋଇଥିବା ଫଟୋ, ତା ତଳକୁ ଆପଣଙ୍କ ସ୍କେଚ୍, ଯାହାକି ପ୍ରତିଫଳନ ହେଉଥିବ ମୂର୍ତ୍ତି ଗଠନ ପୂର୍ବରୁ ନିହଣ ମୂନରେ ଜୀବନ ଦେଇଥିବା କାରିଗରର କଳ୍ପନା। ପରପୃଷ୍ଠା ଦେବୀଙ୍କ ଉତ୍ପତ୍ତି, ମହିମା ସବୁ ରହିବ।

ଖୁବ୍ ନମ୍ରତାର ସହ ମୁଣ୍ଡ ହଲାଇ କହିଥିଲେ- ଆପଣଙ୍କୁ ନିଶ୍ଚୟ ଦେଖାଇବି। ଆପଣ ଯାହା ପରିବର୍ତ୍ତନ ହେବା କଥା କହିବେ। ଉଭୟେ ବିଦାୟ ନେଇଥିଲୁ।

ଦିନେ ପ୍ରକାଶକ ଭିକାରୀବାବୁ ପ୍ରସ୍ତାବ ଦେଲେ ତୁମ ଯନ୍ତ୍ରସ୍ଥ ପୁସ୍ତକ ପାଇଁ ଚିତ୍ର ସଂଯୋଜନା ପାଇଁ ସୁରେଶ ବାବୁଙ୍କୁ କୁହ, ତାଙ୍କର ଭଲ ନିଖୁଣ ଚିତ୍ର କରିବାରେ ଦକ୍ଷତା ଅଛି। ମନକୁ ପାଇଲା ପ୍ରସ୍ତାବ। ପରବର୍ତ୍ତି ଦେଖାରେ ଚିତ୍ର କରିବାର ପ୍ରସ୍ତାବ ଦେବାରେ ସୁରେଶ ବାବୁ ସହର୍ଷ ବଦନରେ କହିଥିଲେ, ଡିଟିପି ପାଣ୍ଡୁଲିପିଟା ମୋତେ ଦେବେ। ଆଉ ସେଇଠି ତାଙ୍କ କାନ୍ଧରେ ଝୁଲିଥିବା ଗାନ୍ଧୀ ମୁଣାରୁ ଚଟି ବହିଟାଏ କାଢ଼ି ମୋ ଆଡ଼କୁ ବଢ଼ାଇ କହିଲେ- ନିଅନ୍ତୁ, ଦେଖନ୍ତୁ, ଆପଣ କହିଥିବା ପୁସ୍ତକ।

ପ୍ରଥମ ପୃଷ୍ଠା- 'ଚଉଷଠି ଯୋଗିନୀ'। ଭିତର ପୃଷ୍ଠା- ଫଟୋ ସହ ବାଖ୍ୟାନ। ମାତ୍ର ମୋ ପ୍ରସ୍ତାବିତ ଆର୍କିଟେକ୍ଟ ଚିତ୍ର ନାହିଁ। ପରେ ପରବର୍ତ୍ତି ସଂସ୍କରଣରେ ସଂଯୋଗ କରିବେ କହି ଚଟି ବହିଟିକୁ ନେଇ ସେଇ ଗାନ୍ଧୀ ମୁଣାରେ ଭରି କରିଦେଲେ।

ଦିନ କେଇଟା ଯାଇନି, ମାନେ ପର ସପ୍ତାହର ଏକ ସଂଧ୍ୟାରେ ସେ ସମୟର ଖଟିସ୍ଥଳ ଅର୍ଥାତ୍ ଦୁଇ ନମ୍ବର ୟୁନିଟ୍‌ସ୍ଥିତ-ଭୁବନେଶ୍ୱରର ପୁରୁଣା ବସ୍‌ଷ୍ଟାଣ୍ଡରେ ମୁଁ ସଅଳ ବସାକୁ ଫେରିବାର ଉଦ୍ୟମ କରୁଥିବାବେଳେ, ମୋ ସ୍କୁଟର ପାଖରେ ତାଙ୍କ ବାଇକ୍ ଅଟକାଇ କହିଲେ- ରଣାବାବୁ! ଆପଣଙ୍କ ପାଇଁ ଆର୍କିଟେକ୍ଟ ଆଣିଛି, ଦେଖିବେ ନାହିଁକି ?

ସେଇ ଚିରାଚରିତ ନମ୍ର ଗଳାର ଉଚ୍ଚାରଣ। ବାଧ କଲା ବିବେକ, ଅଟକି ଯିବାକୁ। ତାଙ୍କ ଗାନ୍ଧୀ ମୁଣାରୁ ବାହାର କଲେ ଏକ ସୁତୁଲି ବନ୍ଧା ତାଳପତ୍ର ବିଡ଼ା। ବଢ଼ାଇ କହିଲେ ଦେଖନ୍ତୁ। ସୁତୁଲିର ଗଣ୍ଠି ଖୋଲି ଯାହା ଦେଖିଲି, ତାହାକୁ ଆଜି ବି ବଖାଣି ବସୁଛି, ଯେଉଁଠି କୋଠାବାଡ଼ି, ପୋଲ, ନାଳନର୍ଦ୍ଦମାର ଆର୍କିଟେକ୍ଟ ନେଇ କଥା ଉଠେ। କାରଣ ମନକୁ ତାହା ବହୁତ ଆନ୍ଦୋଳିତ କରିଥିଲା। ଭାବି ପାରୁନଥିଲି ଯେଉଁ ବାରଶ ବଢ଼େଇ ନିହଣ ମୁନରେ ପୃଥିବୀର ସପ୍ତାଶ୍ଚର୍ଯ୍ୟ ଭିତରୁ ଏକ ଆଶ୍ଚର୍ଯ୍ୟଭରା କାରୁକାର୍ଯ୍ୟଭରା କୋଣାର୍କ ଗଢ଼ିଥିଲେ, ତାହା କ'ଣ ପ୍ରକୃତରେ ଏକ ସ୍ଥପତି ବିଜ୍ଞାନ ସମ୍ମତ। କେଉଁଠାରୁ ପାଇଲେ ଏଇ ସ୍ଥପତିଭରା ପୋଥିକୁ ତାଳପତ୍ରରେ ଅଙ୍କିତ ହୋଇଥିବା କୋଣାର୍କରେ ରେଖାଚିତ୍ର ! ଚିନ୍ତାମଗ୍ନ ହୋଇ ଘରକୁ ଫେରିଲି। ପରବର୍ତ୍ତି ସାକ୍ଷାତରେ ତାଙ୍କୁ ଅନୁସନ୍ଧିତ୍ସୁ ସମ୍ବୋଧନ ନେଇ ଡାକିବି ବୋଲି ସ୍ଥିର କରିନେଲି।

କିନ୍ତୁ, ବିଧିର ବିଧାନ ! କରମ ଲିଖନ କେ କରିବ ଆନ ! ସକାଳୁ ସକାଳୁ ପ୍ରକାଶ ବନ୍ଧୁ ଦୂରଭାଷରେ ଶୁଣାଇ ଦେଲେ ଏକ ଦାରୁଣ ସମ୍ବାଦ- ରାତିରେ ସୁରେଶ ବାବୁ ହୃଦ୍‌କ୍ରିୟା ବନ୍ଦ ନେଇ ଅଟକି ଗଲେ।

ଫୋନ୍ ରଖି ଭାବିଚାଲିଲି- ଅବସର ନେବାକୁ ବାକି ଥିଲା ଛକିରି ଜୀବନ। ଅନିସନ୍ଧିତ୍ସୁ ଉପନାମରେ କାହାକୁ ସମ୍ବୋଧନ କରିବା ? ସେଇ ଉପନାମଟି ଆଜି ବି ମାନସ ପଟଳରେ ଉଜ୍ଜିବୀତ ହୋଇ ରହିଛି। ■

ଏମ୍.ଏ.୫୩, ଜିଜିପି କଲୋନୀ,
ଭୁବନେଶ୍ୱର-୨୫,
ମୋ - ୯୪୩୯୩୩୯୮୧୯





# ସଂସ୍କୃତି ସାମ୍ବାଦିକଙ୍କ ପାଇଁ ସେ ଥିଲେ ଜଣେ ଆଦର୍ଶ ଓ ମାର୍ଗଦର୍ଶକ ନିଜ ଅନୁଭୂତିର କଥା

ଶରତ ପାଇକରାୟ

୨୦୦୧ ମସିହା କଥା। ମୁଁ ଇଟିଭି ଓଡ଼ିଆର ଜଣେ ସାମ୍ବାଦିକ ଭାବେ କାର୍ଯ୍ୟ କାର୍ଯ୍ୟ ଆରମ୍ଭ କରିଥାଏ। ସେତେବେଳେ କାହିଁକି କେଜାଣି ମୋତେ ସଂସ୍କୃତି, ଐତିହ୍ୟ ଏବଂ ପର୍ଯ୍ୟଟନ ଉପରେ ସାମ୍ବାଦିକତା କରିବାକୁ ଆଗ୍ରହ ସୃଷ୍ଟି ହୋଇଥିଲା। ଜଣେ ଭଲ ସଂସ୍କୃତି ସାମ୍ବାଦିକ ଭାବେ ନିଜକୁ ଗଢ଼ି ତୋଳିବାର ଉତ୍ସାହ ଭରି ରହିଥିଲା। ପରିଶେଷରେ ଯାହା ବି ସଫଳତା ପାଇଛି ସେଥିରେ ମୁଁ ଅନ୍ତତଃପକ୍ଷେ ଖୁସି ଅଛି। ତେବେ ଏହି ପଥରେ ଅତିକ୍ରାନ୍ତ ହେବା ପାଇଁ ସେତେବେଳେ ମୋତେ ଯେଉଁ ହାତଗଣତି କେତେଜଣ ସାହାଯ୍ୟ କରିଥିଲେ ସେମାନଙ୍କ ମଧ୍ୟରେ ଜଣେ ଥିଲେ ମୋର ଅତି ପ୍ରିୟ ତଥା ସମ୍ମାନସ୍ପଦ ବଡ଼ଭାଇ ସୁରେଶ ବଳବନ୍ତରାୟ। ସେ ମୋଠାରୁ ବୟସରେ ଢ଼େର୍ ବଡ଼ ହୋଇଥିବା କାରଣରୁ ତାଙ୍କୁ ମୁଁ ସୁରେଶ ଭାଇ ବୋଲି ଡାକୁଥିଲି। ହେଲେ ତାଙ୍କ ସହିତ ପ୍ରଥମ ସାକ୍ଷାତ ମୋର କୌଣସି ବ୍ୟକ୍ତିଗତ ନଥିଲା ବରଂ ଥିଲା ବୃତ୍ତିଗତ। ହେଲେ ଏହି ବୃତ୍ତିଗତ ପରବର୍ତ୍ତି ସମୟରେ ବ୍ୟକ୍ତିଗତ ହୋଇଯାଇଥିଲା ମୋର ଅଜାଣତରେ।

ବର୍ତ୍ତମାନ କେଉଁ ବର୍ଷ ମୋର ମନେ ପଡୁ ନାହିଁ, ହେଲେ ମୋର ଇଟିଭି ହାଇଦ୍ରାବାଦ ଅଫିସରୁ ଏକ ଖବର ଆସିଲା ଓଡ଼ିଶାର ଲୋକନୃତ୍ୟ ଉପରେ ଏକ ୩୦ ମିନିଟ୍‌ର କାର୍ଯ୍ୟକ୍ରମ କରାଯିବ। ମୋର ଆଉ ଜଣେ ଘନିଷ୍ଠ ସାମ୍ବାଦିକ ବନ୍ଧୁ ଶ୍ୟାମହରି ଚକ୍ରଙ୍କୁ ଏ ସଂପର୍କରେ ମୁଁ ଅବଗତ କରାଇଲି। ସେ କହିଲେ ତମ ଇଟିଭିର ସବୁ ଭାଷା ଚ୍ୟାନେଲରେ ଏହା ପ୍ରସାରଣ ହେବ, ସେଥିପାଇଁ ଜଣେ ଭଲ ଗବେଷକଙ୍କର ସାହାଯ୍ୟ ନେବା ଆବଶ୍ୟକ। ସେ ସେତେବେଳେ ଦୁଇତିନି ଜଣଙ୍କ ନାମ ମୋତେ କହିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ସୁରେଶ ବଳବନ୍ତରାୟ।

କାହିଁକି କେଜାଣି ପ୍ରଥମେ ମୁଁ ସୁରେଶ ବାବୁଙ୍କ ପାଖକୁ ହିଁ ଯିବା ପାଇଁ ଭାବିଲି। ସେତେବେଳେ ସେ ଭାରତ ସରକାରଙ୍କ ଜଣେ ଉଚ୍ଚ ପଦସ୍ଥ ଅଧିକାରୀ ଭାବେ କାମ କରୁଥିଲେ। ସେ ସମୟରେ ମୋବାଇଲର ବହୁଳ ପ୍ରସାର ଘଟି ନ ଥିବାରୁ ଫୋନ କରି ଯିବା ସମ୍ଭବ ନ ଥିଲା। ତେଣୁ ମୁଁ ସିଧା ତାଙ୍କ ଅଫିସକୁ ଗଲି ଆଉ ସେ ସଙ୍ଗେ ସଙ୍ଗେ ଭିତରକୁ ଡାକିଲେ। ନମସ୍କାର ମାରିଲି। ଦେଖିଲେ ସାଧାସିଧା କଳା ମଣିଷଟିଏ। ପଚାରିଲେ ଶରତ ତୁମେ କିଛି ଖାଇଛ ? ହଠାତ୍ ଏପରି ପ୍ରଶ୍ନରେ ମୁଁ ଇତସ୍ତତଃ ହୋଇପଡ଼ିଲି। ଜଣେ ବଡ଼ ଭାଇପରି ସ୍ନେହ ମୋ ଉପରେ ଅଜାଡ଼ି ହୋଇପଡ଼ିଲା। କହିଲି ହଁ ଖାଇଛି। ସେ ଛାଡ଼ିଲେ ନାହିଁ କହିଲେ ଚାଲ ତଳକୁ ଯିବା ଚା' ପିଇବା। ଅଫିସ ତଳକୁ ଆସିଲୁ। ଚା' ବିସ୍କୁଟ ଖାଇବା ଭିତରେ ବହୁ କଥା ହେଲି।

ଓଡ଼ିଶାର କେଉଁଠି କ'ଣ ରହିଛି ତା' ସଂପର୍କରେ ମଧ୍ୟ ବହୁ ତଥ୍ୟ ସଂଗ୍ରହ କଲି। ସତରେ କହିବାକୁ ଗଲେ ସେହିଦିନ ହିଁ ମୁଁ ଓଡ଼ିଶାର ସଂସ୍କୃତି କ'ଣ ଜାଣିଲି। ନୂଆନୂଆ ଇଲୋକ୍ଟ୍ରୋନିକ ଗଣମାଧ୍ୟମ, ସେତେବେଳେ ଇଟିଭିର ପ୍ରସାର ଧିରେ ଧିରେ ବଢୁଥାଏ। ସେପରି ପରିସ୍ଥିତିରେ ଜଣେ ଅଚିହ୍ନା ବ୍ୟକ୍ତିଙ୍କ ନିକଟରେ ସେ ଯେପରି ସବୁ ତଥ୍ୟ ଅଜାଡ଼ି ଦେଲେ ମୁଁ ଏ ପର୍ଯ୍ୟନ୍ତ ତାହା କାହାଠାରୁ ପାଇପାରି ନାହିଁ। ଦୁର୍ଭାଗ୍ୟବଶତଃ ସେହି କାର୍ଯ୍ୟକ୍ରମଟି କୌଣସି ଏକ କାରଣରୁ ବନ୍ଦ ହୋଇଗଲା। କିନ୍ତୁ ମୁଁ ସେହିଦିନଠାରୁ ଓଡ଼ିଶାର ସଂସ୍କୃତି ଉପରେ ଯେତେ ସବୁ ରିପୋର୍ଟିଂ କରିଛି ତାହା ପଛରେ ରହିଛି ସୁରେଶ ବଳବନ୍ତରାୟଙ୍କ ହାତ। ଗୋଟିଏ ଥର ଦେଖାରେ ପୂରା ବନ୍ଧୁ ପାଲଟିଗଲେ। ଫଳରେ ଆଉ ଅଫିସରେ ନୁହେଁ ତାଙ୍କୁ ସାକ୍ଷାତ କରିବାର ଏକ ପ୍ରକୃଷ୍ଟ ସ୍ଥାନ ଥିଲା

ଭୁବନେଶ୍ୱରର ପୁରୁଣା ବସ୍‌ଷ୍ଟାଣ୍ଡର ଖଟି। ମୁଁ ସେ ଖଟିକି ବେଳେ ବେଳେ ଯାଏ ହେଲେ ସେ ପ୍ରାୟତଃ ଆସନ୍ତି। ସବୁବେଳେ ତାଙ୍କର ଗୋଟିଏ ଅନୁରୋଧ ଶରତ ଚା' ପିଇବା। କିଛିମାସ ବ୍ୟବଧାନ ପରେ ଏକ ଜାତିଗତ ପ୍ରସଙ୍ଗରେ ସେ ମୋତେ କହିଲେ ତୁମେ ହେଉଛ ପାଇକରାୟ ଆଉ ମୁଁ ହେଉଛି ବଳବନ୍ତରାୟ। ମିଶିକି କାମ କରିବା କିଛି ଅସୁବିଧା ହେବ ନାହିଁ। ଏହି କଥା କହିବା ପରେ ସେ ଜୋରରେ ହସିଦେଲେ ମୁଁ ମଧ୍ୟ ହସିଲି। ଏହା ପରେ ଆମ ଭିତରେ ଏକ ସୁଦୃଢ଼ ଜାତିଗତ ସଂପର୍କ ଅଜାଣତରେ ଗଢ଼ି ଉଠିଥିଲା।

ସେହିପରି ଆଉ ଏକ ଘଟଣା ବର୍ଣ୍ଣନା ନ କଲେ ଭୁଲ୍ ହେବ। କେନ୍ଦ୍ର ସଂସ୍କୃତି ବିଭାଗର ଏକ ଜୁନିୟର ଫେଲୋସିପ ପାଇଁ ମୁଁ ଆବେଦନ କରିବା ପାଇଁ ଚାହୁଁଥିଲି। ହେଲେ ସେ ରିପୋର୍ଟ କିପରି ପ୍ରସ୍ତୁତ ହେବ ତାହା ମୋର ଧାରଣା ନଥିଲା। କାରଣ ସେତେବେଳେ ଭଲ ରିପୋର୍ଟଟିଏ ନ ଦେଲେ ଫେଲୋସିପ ପାଇବା କାଠିକର ପାଠ ଥିଲା। ପୁରୁଣା ବସଷ୍ଟାଣ୍ଡ ଖଟିରେ ଏ ସଂପର୍କରେ ଆଲୋଚନା କଲି। ପ୍ରାୟତଃ ସମସ୍ତେ କହିଲେ ସୁରେଶ ଭାଇ ହିଁ ଏ କ୍ଷେତ୍ରରେ ତମକୁ ସାହାଯ୍ୟ କରିପାରିବେ। ତାହାହିଁ ହେଲା। ତାଙ୍କ ସହିତ ଆଲୋଚନା କଲି ଅନୁରୋଧ କଲି ଏହା କିପରି ହେବ ଟିକିଏ ମୋତେ କହିଦିଅନ୍ତୁ। ସେ ହସିଲେ। କହିବି କାହିଁକି ତମକୁ କେଉଁଠି କ'ଣ ଅଛି ତାହା ବତାଇ ଦେବି। ସେଗୁଡ଼ିକ କିପରି ଏକାଠି କରି ରିପୋର୍ଟ କରାଯିବ ତାହା ମଧ୍ୟ କହିଦେବି। ତମେ କରି ଆଣିବା ପରେ ମୁଁ ଠିକ୍ କରିଦେବି। ତମକୁ ନିଶ୍ଚିତ ଜୁନିୟର ଫେଲୋସିପ ମିଳିବ ବ୍ୟସ୍ତ ହୁଅ ନାହିଁ।

ମୁଁ ବି ଆଶ୍ଚର୍ଯ୍ୟ ହେଲି। ରିପୋର୍ଟ ତିଆରି ହୋଇ ନାହିଁ ହେଲେ ସେ ଦୃଢ଼ତାର ସହ କହୁଛନ୍ତି ବ୍ୟସ୍ତ ହୁଅ ନାହିଁ ତମକୁ ଫେଲୋସିପ ମିଳିବ। ଖଟିରେ ଉଭୟଙ୍କ ଆଲୋଚନା ପରେ ନିଷ୍ପତ୍ତି ହେଲା ଓଡ଼ିଶାର ଲୋକ ନାଟକ ଉପରେ ହିଁ ଫେଲୋସିପ କରାଯିବ। କିଛିଦିନ ବ୍ୟବଧାନରେ ସେ କ'ଣ କ'ଣ ଲେଖାହେବ ତାହା ମଧ୍ୟ ମୋତେ କହିଦେଲେ। ଏପରିକି କ'ଣ ହେଡିଂ ହେବ, କ'ଣ ସବ୍‌ହେଡିଂ ହେବ ତାହା ମଧ୍ୟ ବତାଇ ଦେଲେ। ସେହି ଅନୁସାରେ ମୁଁ ଏକ ରିପୋର୍ଟ ପ୍ରସ୍ତୁତ କଲି ଏବଂ ମୁଁ ବହୁତ ଖୁସି ଯେ, ତାଙ୍କ ହାତ ସ୍ପର୍ଶରେ ମୋତେ ଏହି ଫେଲୋସିପ୍ ମିଳିଥିଲା।

କହିବାକୁ ଗଲେ ଓଡ଼ିଶାର କଳା ସଂସ୍କୃତି ଓ ପର୍ଯ୍ୟଟନ ଏକ ଗନ୍ତାଘର ଥିଲେ ସୁରେଶ ଭାଇ। ସେ ନିଜେ ଥିଲେ ଗୋଟିଏ ସାଂସ୍କୃତିକ ଅନୁଷ୍ଠାନ। ସେତିକି ନୁହେଁ ଓଡ଼ିଶୀ ନୃତ୍ୟର ମଧ୍ୟ ଥିଲେ ଜଣେ ଗବେଷକ। ବୋଧହୁଏ ସମସ୍ତେ ତାଙ୍କୁ ଭାରତ ସରକାରଙ୍କ ଜଣେ ବରିଷ୍ଠ ଅଧିକାରୀ ଭାବେ ଯେତିକି ଜାଣନ୍ତି, ବରଂ ଅଧିକ ଜଣେ ସଂସ୍କୃତି ଗବେଷକ ଭାବେ ଜାଣନ୍ତି। ସଂସ୍କୃତି ଉପରେ ଯେଉଁ ନୂଆ ସାମ୍ବାଦିକମାନେ ମୋ ପାଖକୁ ବୁଝିବା ପାଇଁ ଆସନ୍ତି ସେମାନଙ୍କୁ ହିଁ ମୁଁ ସୁରେଶ ଭାଇଙ୍କ ନାମ ସୁପାରିଶ କରିଥାଏ। ଆଉ ଯେଉଁମାନେ ଯାଆନ୍ତି ସେମାନେ ପରବର୍ତ୍ତି ସମୟରେ ମୋତେ ଧନ୍ୟବାଦ ଦିଅନ୍ତି। ବହୁଦିନର ବନ୍ଧୁ ହିସାବରେ ତାଙ୍କୁ ଗୋଟିଏ କଥା କହିବାକୁ ମୁଁ ଅନେକ ଥର ଚେଷ୍ଟା କରିଛି। ହେଲେ ସାହସ କରିପାରିଲି ନାହିଁ। ମୋର ଇଚ୍ଛା ଥିଲା ତାଙ୍କୁ ସିଧାସିଧା କହିଥା'ନ୍ତି ସୁରେଶ ଭାଇ ଆପଣ ପ୍ରକୃତରେ ଜଣେ କଳା ଲୋକ। ■

ରେସିଡେଣ୍ଟ ଇଡ଼ିଟର,
ଦି ଓଡ଼ିଶା





# A Common Man's Critic :
## A Tribute to Suresh Balabanta Ray
**Kedar Mishra**

He was a veryordinary, a small town scholar, writing in local news papers and journals; but he was armed with a brilliant global vision and was never confined to a smaller social identity. He was a poet, fiction writer, painter, playwright, curator, archaeologist, scholar, chronicler, collectors of dolls and masks, art critic, editor, translator, organizer and above all a man for all seasons. He was Suresh Balabanta Ray, a renowned scholar of folk arts of Odisha, who passed away on 14 January 2014. He authored a very significant book on Prahlad Natak, a well known folk dance from of Odisha, which is also considered as a source dance for Odissi. His contribution may look little in terms of numbers and visibility, but his works are basic references for scholars in the field of dance and theater. He devoted most of his time to write on theater and dance. In a conservative definition, we may not call him an art critic; but in a larger sense he was a major critic who unfolded many unknown facts, information, documents and anecdotes on Odisha art. His contribution in the field of folk dance is huge and unmatched. He was one of the significant contributors to *Nartanam's* book on Odisha folk dances; it is sad that the book could not be published during his life time. His demise was shockingly premature. Born on 26 October 1954 he died at the age of 59. His towering work on the Yogini cult of Odisha will be remembered as a landmark. In this book he dealt with the detail of aesthetic of Yogini iconography. He wrote an entire chapter on the hair design and hastakas. He wrote another book on the temples of Bhubaneswar for tourists.

As an enthusiast of classical and folk dance forms he wrote scores of articles on these subjects. As a multi faceted scholar and creative writer he explored so many vistas and ventures. He was an excellent story teller and lover of medieval and modern Odia poetry. His solo paintings show on the mystic poems of Odisha was spectacular and unique in its content and style. I quote from my writing on 30 No-

vember 2011. "A cow has six heads and an udder full of milk, but the calf is fed by the tail- what does it mean? The tree is swallowed by its fruit- how can it be? The deer is playing in the sea and a fish is swimming on the hill top- Is is possible? These are a few lines from mystic Odia poets, which are highly popular yet hard to reach in meaning. One cannot just shrug off these as absurd or surreal. Absurdity and surrealism come out of subconscious imagination. In India our saint poets brand these poems as Sarira Veda or the mystery of the body. One has to deconstruct the meaning and discover the silence behind the lines. If we look at these lines as metaphysical poems, we can go on searching meanings and beyond. Suresh Balabantaray, a writer, painter and collector of arts and crafts set himself into a journey of this difficult terrain through his lines and colours. It is for the first time that an Odia painter devoted his whole exhibition for a particular Odia theme and tried to invent a Desi line and language in paintings".

Suresh Balabanta Ray's untimely demise has created a vaccum for ever in the field of art scholarship in Odisha.

*(Kedar Mishra is an Odia poet. He is also well known as an editor, translator, journalist, scholar, art critic and cultural activist. He has published four poetry collections in Odia, two collections of prose, three books in English and his works are widely translated into English, Hindi, Bengali, Assamese, Nepali and Irish. He is a regular contributor to Nartanam and its research associate.)*



# ଆତ୍ମନିମଗ୍ନ କବି ସୁରେଶ ଓ ହୀରାପୁରର ଚିତ୍ର କଥା

ଶ୍ରୀରାମ ଦାଶ

ସୁରେଶ ବଳବନ୍ତରାୟଙ୍କ ଅସମୟ ମୃତ୍ୟୁ ଓଡିଶାର ସାହିତ୍ୟ, କଳା ଓ ସଂସ୍କୃତି ଜଗତକୁ ଦୋହଲେଇ ଦେଇଥିଲା । ସୁରେଶ ଯେ ଏତେ ଶୀଘ୍ର ଆମ ସମସ୍ତଙ୍କୁ ଛାଡି ଚାଲିଯିବେ ସେ କଥା ଆଜିବି ଭାବି ହେଉନାହିଁ । ମୋ'ର ସୁରେଶଙ୍କ ସହିତ ଆତ୍ମୀୟତା ୭୦ ଦଶକରୁ । ମନେ ଅଛି ଓଡିଆ ଯୁବ ଲେଖକ ସମ୍ମିଳନୀର ରାଉରକେଲା ଅଧିବେଶନରେ ସେ ମୋର ଅତ୍ୟନ୍ତ ଘନିଷ୍ଠ ହୋଇଯାଇଥିଲେ ।

ପରବର୍ତ୍ତୀ ସମୟରେ ବିଭିନ୍ନ ସାହିତ୍ୟ ସମ୍ମିଳନୀ ଓ ବୌଦ୍ଧିକ ଖଟିରେ ତାଙ୍କ ସହ ମୋର ସାକ୍ଷାତ ହେଉଥିଲା । ତାଙ୍କ ଭଳି ଜଣେ ସ୍ପଷ୍ଟବାଦୀ ମଣିଷ ଏ ସମୟରେ ମିଳିବା ବିରଳ । ମୋର ପଢ଼ା ସାଥୀ ସ୍ୱର୍ଗତଃ ଦୈତାରୀ କର ସେଣ୍ଟ୍ରାଲ ଏକସାଇସ୍ ଓ କଷ୍ଟମ ବିଭାଗରେ ଇନସ୍‌ପେକ୍ଟର ଚାକିରୀ ପାଇବାର କିଛି ବର୍ଷ ପରେ ଶ୍ରଦ୍ଧେୟ ସୁରେଶ ମଧ୍ୟ ସେହି ବିଭାଗରେ ଯୋଗ ଦେଇଥିଲେ । ସୁରେଶଙ୍କ ସହ ଅନେକ ସ୍ମୃତି ରହିଛି ଯାହାକୁ ଭୁଲି ହେବ ନାହିଁ । ଦୈତାରୀ କର ପରାଦ୍ୱୀପ ବନ୍ଦରରେ ଥିବା ସମୟରେ ସୁରେଶ ବେଳେ ବେଳେ ବିଭାଗୀୟ କାର୍ଯ୍ୟରେ ସେଠାକୁ ଯାଉଥିଲେ । ଦୈତାରୀକୁ ନିଜ ବଡ ଭାଇ ଭଳି ସମ୍ମାନ ଦେଉଥିଲେ । ମୋର ମନେ ଅଛି, ମୁଁ ସେତେବେଳେ ଖୁବ୍ ସିଗ୍ରେଟ୍ ପିଉଥିଲି, ପ୍ରତ୍ୟେକ ଥର ସେ "ଡନ୍ ହିଲ" ଓ "ଟ୍ରିପଲ ଫାଇଭ" ସିଗ୍ରେଟ୍ ପ୍ୟାକେଟ ଆଣି ମୋତେ ଉପହାର ଦେଉଥିଲେ ।

ଆମ ସମୟର ୭୦-୮୦ ଦଶକର ଯେଉଁ ସବୁ ସମ୍ଭ୍ରାନ୍ତ ସାହିତ୍ୟ ପତ୍ରିକା ପ୍ରକାଶ ପାଉଥିଲା ସେଥିରେ ଆମ ଦୁହିଁଙ୍କର ବହୁତ କବିତା ପ୍ରକାଶ ପାଇଛି । କବିମାନେ ସାଧାରଣତଃ ଅନ୍ୟମନସ୍କ । ସୁରେଶ କେବଳ କବି ନଥିଲେ ତାଙ୍କ ବହୁମୁଖୀ ପ୍ରତିଭା ଭିତରେ ଥିଲା ଚିତ୍ରକର, ଅନୁବାଦକ ଓ କଣ୍ଢେଇ ସଂଗ୍ରହକାରୀର ନିମଗ୍ନ ନିଶା, ସେ ବେଳେ ବେଳେ ଭୁବନେଶ୍ୱରର ପୁରୁଣା ବସଷ୍ଟାଣ୍ଡ ସାହିତ୍ୟ ଖଟିରେ ଚୁପଚାପ ହୋଇ ନିଜ ଭିତରେ ନିଃଶବ୍ଦ ହୋଇ ଯାଉଥିବାର ମୁଁ ଦେଖିଛି । ଏଭଳି ଭାବ ତାଙ୍କ ଚରିତ୍ରରର ବିପରୀତ ଥିଲା, କାରଣ ସେ ଅତ୍ୟନ୍ତ ପ୍ରଗଳ୍ଭ ଓ ଚଳଚଞ୍ଚଳ ମଣିଷଟିଏ ଥିଲେ ।

ସାହିତ୍ୟ ଖଟିରେ ବେଳେବେଳେ ସେ ବଡ ପାଟିରେ ତର୍କ କରୁଥିବାର ମୁଁ ଦେଖିଛି । ପରବର୍ତ୍ତୀ ସମୟରେ, ସାମୟିକ ମତାନ୍ତରରେ ଚୁପ ହୋଇଯାଉଥିବା ମଣିଷକୁ କୁଣ୍ଢେଇ ପକାଇ ଏକାକାର ହୋଇଯିବାର ମୁଁ ଦେଖିଛି । ଚଉଷଠି ଯୋଗିନୀ ମନ୍ଦିର ପ୍ରାଙ୍ଗଣରେ ଯେଉଁ ସାଂସ୍କୃତିକ ଉତ୍ସବ ଅନୁଷ୍ଠିତ ହୁଏ ସେ ଥିଲେ ତାର ମୁଖ୍ୟ ପୁରୋଧା । ଗୁନା ପଣ୍ଡା ଓ ତାଙ୍କର ନୃତ୍ୟାଙ୍ଗନା ପତ୍ନୀ ଏହି ହୀରାପୁର ଚଉଷଠି ଯୋଗିନୀ ଉତ୍ସବର ମୁଖ୍ୟ ଆୟୋଜକ ହୋଇଥିଲେ ମଧ୍ୟ ଏହା ପଛରେ ଥିଲା ସୁରେଶଙ୍କ କଳ୍ପନା ପ୍ରସୂତ ଏକ ମହୋତ୍ସବ ଆୟୋଜନର ତୀବ୍ର ଅଭିପ୍ସା, ପ୍ରତିଥର ସେ ମତେ ନିମନ୍ତ୍ରଣ କରନ୍ତି । ମୁଁ ଭୁଲିଯାଇଥାଏ । ଉତ୍ସବ ଶେଷ ହେବାପରେ ପୁରୁଣା ବସ୍ ଷ୍ଟାଣ୍ଡ ସାହିତ୍ୟ ଖଟିରେ ଦେଖାହେଲେ ଖୁବ୍ ଅଭିମାନ କରି ମୁହଁ ଫୁଲେଇ ବସନ୍ତି । ମୁଁ ଚୁପ ରହିଲେ ସେ ପାଟି କରି କହନ୍ତି ସମସ୍ତଙ୍କୁ ଚା' ଦିଅ, ଶ୍ରୀରାମ ଭାଇ ସବୁ ଚା'ର ପଇସା ଦେବେ । କାରଣ ପ୍ରତି ବର୍ଷ ସେ ହୀରାପୁର ଯିବାକୁ କହୁଛନ୍ତି ହେଲେ ଥରେ ବି ଯାଉନାହାନ୍ତି ।

ନିଜପାଇଁ ସାହିତ୍ୟ ରଚନା କରିବା ଓ ସାହିତ୍ୟିକମାନଙ୍କୁ ନେଇ ସଂଗଠନ କରିବା ଦୁଇଟା ଭିନ୍ନ କଥା । ଏଠାରେ ନାମ ପ୍ରକାଶ କରିବା ଉଚିତ ହେବ ନାହିଁ । ଥରେ ଜଣେ ଲେଖକ "ବୁଦ୍ଧ"ଙ୍କ ସଂପର୍କୀୟ ଏକ ପୁସ୍ତକ ଲେଖି ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ, ସେ କେମିତି ଅନ୍ୟ ଏକ ବହିରୁ ସମସ୍ତ ଉପାଦାନ ଆଣି ନିଜ ନାଁରେ ଭଣିତା କରି

ଏକାଡେମୀ ପୁରସ୍କାର ପାଇଲେ ସେ ବିଷୟରେ ଉକ୍ତ ଲେଖକଙ୍କ ଉପସ୍ଥିତିରେ ପୁରୁଣା ବସଷ୍ଟାଣ୍ଡ ଖଟିରେ ଖୁବ ଜୋରରେ ପାଟି କରି, ଏକାଡେମୀ ପୁରସ୍କାରରେ ହେଉଥିବା ତ୍ରୁଟି ବିଚ୍ୟୁତିର ଅନେକ ଉଦାହରଣ ଦେଇଥିଲେ । ମୁଁ ସେତେବେଳେ ଓଡିଶା ସାହିତ୍ୟ ଏକାଡେମୀର ସଦସ୍ୟ ଥିଲି । ଏଣୁ ସେ ମତେବି ପଚାରିଥିଲେ ଏମିତି କେମିତି ମଲାଟ ବଦଳା ବହିଗୁଡିକୁ ଏକାଡେମୀ ପୁରସ୍କାର ଦିଆଯାଉଛି । ମୁଁ ତାଙ୍କୁ କହିଥିଲି ଏ ସବୁ ସାହିତ୍ୟ ଏକାଡେମୀର ନିଜସ୍ୱ ବ୍ୟାପାର । କୌଣସି ସଦସ୍ୟ ବୋଧ ହୁଏ କିଛି ଜାଣନ୍ତି ନାହିଁ, କେଉଁ ବହି ଗୁଡିକୁ ଏକାଡେମୀ ପୁରସ୍କାର ପାଇଁ ବଛାଯାଇଛି ଓ କେଉଁ ବରିଷ୍ଠ ସାହିତିକ ଓ ଲେଖକମାନେ ଏହାର ଚୟନ କରିଛନ୍ତି । ସେହି ଲେଖକ ଚାଲିଗଲା ପରେ, ସେ ମତେ କହିଲେ ଶ୍ରୀ ରାମ ଭାଇ, ମୁଁ କ'ଣ ଜାଣିନି ଯେ ସାହିତ୍ୟ ଏକାଡେମୀ ସଦସ୍ୟମାନେ ପୁରସ୍କାର ଚୟନ ସମ୍ପର୍କରେ ଅନ୍ଧାରରେ ଥା'ନ୍ତି । ସେମାନେ କେବଳ କିଛି ଭଲ ବହିର ପ୍ରସ୍ତାବ ମାତ୍ର ଦେଇଥା'ନ୍ତି, ଆଉ ସବୁ ବେପାର ସାହିତ୍ୟ ଏକାଡେମୀର ।

ସୁରେଶ ବଳବନ୍ତରାୟ ସବୁ ବୟସର ସବୁ ପ୍ରକାରର ସାହିତିକମାନଙ୍କର ପ୍ରିୟ ଥିଲେ ବି ତାଙ୍କର ସମସ୍ତଙ୍କ ପ୍ରତି ସମାନ ଭାବନା ନଥିଲା । ଏଭଳି ହେବା ସ୍ୱାଭାବିକ, କାରଣ ପ୍ରତି ମଣିଷର ଚରିତ୍ରରେ ଦ୍ୱୈତ ଭାବ ଥାଏ । ଯେଉଁମାନେ କୁହନ୍ତି "ମୁଁ ଯାହା ଭାବୁଛି ତାହା ହିଁ କହୁଛି", "ମୁଁ ଭିତରେ ଯାହା ବାହାରେ ତାହା" ସେମାନେ ମିଛ କହିଥାଆନ୍ତି । ସୁରେଶ ଦୃଢ଼କଣ୍ଠରେ ତାଙ୍କର ଦୋଷକୁ ମଧ୍ୟ ସ୍ୱୀକାର କରୁଥିଲେ । ଏଭଳି ଏକ ମଣିଷର ଛଦ୍ମ ଶତ୍ରୁ ରହିବା ସ୍ୱଭାବିକ, କିନ୍ତୁ ସୁରେଶଙ୍କ କ୍ଷେତ୍ରରେ ଏହା ଆଦୌ ନଥିଲା । ଜନ୍ମ-ମୃତ୍ୟୁ ହେବା ପରେ ପୁନଶ୍ଚ ଜନ୍ମ ଏକ ଅବଧାରିତ ପ୍ରକ୍ରିୟା ।

ସୁରେଶ ଅନେକ ଦିନରୁ ଆମକୁ ଛାଡି ଚାଲି ଗଲେଣି । ସେ ଯେଉଁ ଅଜଣା ଗାଁ ଓ ଅଜଣା ଠିକଣାକୁ ଯାଇଛନ୍ତି, ଆମ ସମସ୍ତଙ୍କୁ ଦିନେ ସେହି ଅନ୍ଧାର ଦିଗନ୍ତକୁ ଯିବାକୁ ପଡିବ । ମୋର ବିଶ୍ୱାସ ସୁରେଶଙ୍କର ହୁଏତ ପୁନଃ ଜନ୍ମ ହୋଇସାରିଥିବ । ମୃତ୍ୟୁ ପରେ ଜୀବ ତା' ଶେଷ ଜୀବନର ସମସ୍ତ ସ୍ମୃତି ଭୁଲିଯାଇଥାଏ କି ମନେ ରଖିଥାଏ, ମୁଁ ଏହା କହିପାରିବି ନାହିଁ । ଶହ ଶହଥର ଜନ୍ମଲାଭ ପରେ ମୃତ୍ୟୁଲୋକକୁ ଫେରିଯାଇଥିବା ଆତ୍ମମାନେ ଯଦି ତାଙ୍କ ସମସ୍ତ ସ୍ମୃତିକୁ ମନେ ରଖି ପାରୁଥା'ନ୍ତେ ତେବେ ସେ ତାଙ୍କର ନିଜର ରୁଚି ଓ ବିଚାର ଅନୁସାରେ ପୁନଃଜନ୍ମ ଲାଭ କରୁଥା'ନ୍ତେ ।

ମୁଁ ଭାବୁଛି ସୁରେଶ ଆଉ କେଉଁଠି ଜନ୍ମ ହୋଇ କବିତା ଲେଖିବାକୁ ପ୍ରୟାସ କରୁଥିବେ କିମ୍ବା ରଙ୍ଗ ତୂଳି ଧରି କାନ୍ଥରେ ଚିତ୍ର ଆଙ୍କି ଶିଖୁଥିବେ । ସେ ଯେଉଁଠି ଥା'ନ୍ତୁ ଯେମିତି ଥା'ନ୍ତୁ ଇଶ୍ୱର ତାଙ୍କର ସମସ୍ତ ଇଛା ପୂର୍ଣ୍ଣ କରନ୍ତୁ ଏତିକି ମୋର କାମନା । □





# ଦଶହରାରେ ଆଉ ସେ ମଜା ନାହିଁ

ସ୍ରୋତସ୍ୱତୀ ଜେନା

ଲେଖିବା କ'ଣ ସେ ଅନୁଭବ କି ଅଭିଜ୍ଞତା ମୋର ନାହିଁ । ଏମିତି କଥାରେ କଥାରେ ଜିନ୍ଦି ଓ ସୀମା କହିଲେ "ଆରେ ମାମୁଙ୍କ ପାଇଁ କିଛି ଲେଖେ'' । ହସ ମଜାରେ ଉଡେଇ ଦେଲି । ମୁଁ କଣ ଲେଖିବି, ସେ ଲେଖାଲେଖି କଣ ମତେ କିଛି ଆସେ ! କିନ୍ତୁ ମନ ଭିତରେ ଗୋଟେ କଥା ଉଙ୍କି ମାରିଲା, କ'ଣ ପାଇଁ ନୁହେଁ । ମାମୁଙ୍କ ସ୍ମୃତି, ବହୁତ ସ୍ମୃତି । ଛୋଟବେଳରୁ ଆରମ୍ଭ କରି ବହୁତ କିଛି ଅନୁଭୂତି ଦେଇ ଯାଇଛନ୍ତି ସେ ମତେ । ସତରେ କ'ଣ ମୁଁ ମାମୁଙ୍କ ପାଇଁ କିଛି ବି ଲେଖିପାରିବି ନାହିଁ ? ସେଠୁ ଭାବିଲି ମୁଁ ଲେଖିବି ।

କୋଉ କଥାରୁ ଆରମ୍ଭ କରିବି । ବହୁତ ଫିକା ଫିକା ମନେ ପଡ଼େ ସେଇ କଥା- ଛୁଆବେଳର କଥା । ମାମୁ ଆସିବେ, ଅଜାଙ୍କ ଘରକୁ ଯିବୁ ସବୁ ମିଶିକି ଦଶହରାରେ । ଯେତିକି ସମୟ ସବୁ ମିଶିକି ରହୁ, ଖାଲି ହସ ମଜା, ଦୁନିଆଯାକର ଗୁଲିଖଟି । ବୋଉ ଓ ମାମୁଙ୍କର ଛୁଆବେଳର ଗପଠୁ ଆରମ୍ଭ କରିକି ମାମୁ ଶୁଣାନ୍ତି ଦୁନିଆଯାକର ମଜା ଗପ । ମାମୁଙ୍କର ଭୁବନେଶ୍ୱର ଆସିବା ଖବର ଘରକୁ ଆସିଲାମାନେ ସମସ୍ତେ ତତ୍ପର ଓ ସେ ଆସିବାର ଦିନକୁ ସମସ୍ତେ ଅନେଇକି ବସିଥାଉ । ଯେତେ ଯାହା ହେଲେ ବି ଦଶହରାରେ ମିଶିକି ଗାଁକୁ ଯିବା ସୁନିଶ୍ଚିତ । ଦିନ ଆସିଲା ମାମୁ ଟ୍ରାନସ୍‌ଫର୍ ହେଇକି ଭୁବନେଶ୍ୱର ଆସିଗଲେ । ଲାଗିଲା ସବୁଦିନ ଏବେ ଦଶହରା । ଯେତେବେଳେ ଚାହୁଁ ମାମୁ ଘର ଆଉ ଆମର ଯିବା ଆସିବା ଅନବରତ । ସମସ୍ତଙ୍କୁ ଏକାଠି କରିକି ଆସର ଜମେଇବା କଳାରେ ମାମୁ ଧୁରନ୍ଧର । ରାତି ଅଧିଆ ତାସ୍‌ଖେଳ ସାଙ୍ଗକୁ ମୁଡି ମିକ୍ସଚର୍‌ର ପାଗ, ଗ୍ରନ୍ଥାବଳୀରୁ କବିତା ଆବୃତ୍ତି ତ ପୁଣି କେତେବେଳେ ନୂଆ ପେଣ୍ଟିଙ୍ଗ୍‌ର ବର୍ଣ୍ଣନା । ଆଉ କେତେବେଳେ ପୁଣି ମାଇଁ ଚିଡିଥିଲେ ଏମ୍‌ପିଥ୍ରି ପ୍ଲେୟାର୍‌ରେ "ମୋ ରଙ୍ଗଲତା ରୁଷିଛି" ଗୀତ ବଜେଇକି ସମସ୍ତଙ୍କୁ ହସାଇବା । କୋଉ ନା କୋଉ ପ୍ରକାରରେ ସମସ୍ତଙ୍କୁ ଗୋଟେ ଡୋରିରେ ବାନ୍ଧିକି ହସମଜା ଗୁଲିଖଟିରେ ମଜାଇ ରଖିବାରେ ମାମୁ ଥିଲେ ସିଦ୍ଧହସ୍ତ ।

କିନ୍ତୁ ଆମର ଦୁର୍ଭାଗ୍ୟ ଏମିତି ଅସମୟରେ ମାମୁ ପଳେଇଲେ ଭାବିବି ହୁଏନି । ଏ ଭିତରେ ୫ବର୍ଷ ହୋଇଗଲାଣି । ଦିନେ ବି ଏମିତି ବିତି ନାହିଁ, ଯେଉଁଦିନ କଥାବାର୍ତ୍ତାରେ ମାମୁଙ୍କ କଥା ଉଠିନାହିଁ ।

ଏବେ ବି ପ୍ରତିବର୍ଷ ଦଶହରା ଆସୁଛି । କିନ୍ତୁ ସେ ଉତ୍କଣ୍ଠା କି ଉଦ୍‌ବେଗ ଆଉ ନାହିଁ । ସମସ୍ତେ ଏକାଠି ହେଲେ ବି ଗାଁକୁ ଯିବାର ସେ ମଜା ଆଉ ନାହିଁ କି ସେ ଗୋଟିଏ ଦିନକୁ ଅନେଇକି ରହିବାର ସ୍ପୃହା ବି ଆଉ ନାହିଁ । ଖାଲି ରହିଯାଇଛି ତ କେବଳ ବିତିଯାଇଥିବା ଦିନଗୁଡିକର ସ୍ମୃତି । ଅନେକ ସ୍ମୃତି । ମାମୁଙ୍କ ପାଇଁ ଗୋଟିଏ କଥା ହିଁ ଶେଷରେ ଲେଖିବି –

*" It's impossible to forget someone who gave you so much to remember.*



# ମୋ ମାମୁ

## ଶାଶ୍ୱତୀ ଜେନା

"ମାମୁ" ଏ ଶବ୍ଦଟି ହିଁ ମୋ ପାଇଁ ଭିନ୍ନ ଏକ ଅନୁଭୂତି । ମନ ଭିତରେ ଅନେକ ଛବି ଉଙ୍କି ମାରି ଏକ ଫାଷ୍ଟ ଫରଓ୍ୱାର୍ଡ ମୁଭି ପରି ଚାଲିଯାଏ ଏବଂ ଏହାର ନାୟକ ହେଉଛନ୍ତି ଶ୍ରୀ ସୁରେଶ ବଳବନ୍ତରାୟ "ମୋ ମାମୁ" । ଆଗକୁ ଝୁଙ୍କି ହୋଇ ଚାଲିବା, ସକାଳୁ ତରତର ହୋଇ ଅଫିସ ବାହାରିଲେ ମଧ୍ୟ ପାଟେଇକି ମୁଣ୍ଡ କୁଣ୍ଡେଇବା, ୫ମିନିଟ୍ ଧରି ପରଫ୍ୟୁମ୍ ଓଭର୍ ସ୍ପ୍ରେ କରିବା, ମନଖୋଲା ହସ ଓ ମଜାର ଆସର ଜମେଇବା, ପଢା ଟେବୁଲରେ ଟେବୁଲ ଲ୍ୟାମ୍ପ ଲଗାଇ କିଛି ଲେଖିବା ବା ପଢିବା. ସନ୍ଧ୍ୟାରେ ତାଜା ଫୁଲ ଆଣି ଫୁଲଦାନୀରେ ସଜେଇବା, ପୁରୁଣା ବସ୍‌ଷ୍ଟାଣ୍ଡ ଓ କଫି ହାଉସ୍ ଯିବାର ବ୍ୟଗ୍ରତା, ନୂଆ କଣ୍ଡେଇ ଆଣି ସଜେଇବା, ଏମିତି କେତେ କଣ ଦୃଶ୍ୟ ଏକ ସମୟରେ କୋଲାଜ୍ ହୋଇ ଆଖି ଆଗରେ ନାଚି ଯାଉଛି ।

ତାଙ୍କର ୬୫ତମ ଜନ୍ମତିଥିରେ ତାଙ୍କ ବିଷୟରେ ତାଙ୍କ ଅବର୍ତ୍ତମାନରେ ଯେ ମୁଁ କିଛି ଲେଖିବାକୁ ଚେଷ୍ଟା କରୁଛି, ତାହା ବି ବିଶ୍ୱାସ କରିବାକୁ ବହୁତ କଷ୍ଟ ହେଉଛି । ଜିନ୍ଦି (ଫାଷ୍ଟ ଫରଓ୍ୱାର୍ଡ ମୁଭିର ସହ କଳାକାର) ଆମ ସୁରେଶ ବଳବନ୍ତରାୟ ଫାଉଣ୍ଡେସନ୍‌ର ସମ୍ପାଦିକାଙ୍କ ନିର୍ଦ୍ଦେଶ ଅନୁସାରେ କିଛି ଲେଖିବାର ଏକ ଛୋଟ ପ୍ରୟାସ ।

ଆରମ୍ଭରୁ ହିଁ ମୁଁ ମାମୁଙ୍କୁ ନେଇ ବହୁତ ଗର୍ବ ଅନୁଭବ କରେ । ମୋର ଏକ ଦୃଢ ବିଶ୍ୱାସ ଯେ ମାମୁ ସବୁ ଜାଣିଛନ୍ତି । ସେ କିଛି ବି କରିପାରିବେ (ସୁପର୍ ମ୍ୟାନ୍), ଦୁନିଆର ସବୁ ପ୍ରଶ୍ନର ଉତ୍ତର ତାଙ୍କ ପାଖେ ଅଛି, ସବୁ ସାଧାରଣ ଜିନିଷକୁ ସେ ଅସାଧାରଣ କରିପାରିବେ ଏବଂ ତାଙ୍କଠାରୁ ଅପ୍‌ଡେଟେଡ୍ ବୋଧେ କେହି ନାହିଁ ।

ମୋ ଜନ୍ମ ସମୟରୁ ହିଁ ମୋ ଜୀବନରେ ତାଙ୍କର ଉପସ୍ଥିତି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ, କାରଣ ମୁଁ ଓ ମୋ ଜୀବନଶୈଳୀ ଅନେକ ଭାବରେ ମାମୁଙ୍କ ଦ୍ୱାରା ପ୍ରଭାବିତ ।

ଛୁଆବେଳୁ ମାମୁଙ୍କର ଷ୍ଟେସ୍‌ନାରୀ କିଟ୍ ଆଉ ବଡ ହେବା ପରେ ମାମୁଙ୍କ ପଢା ଟେବୁଲର ଭିନ୍ନ ଏକ ଆକର୍ଷଣ ଥାଏ । ସେ ବିଭିନ୍ନ ନୂଆ ପ୍ରକାରର କଲମ, କଲର୍ ପେନ୍, ପେନ୍‌ସିଲ୍, ଫୋଲଡର୍, ଡାଏରୀ, ଲଫାପା, ଅଠା, ପେପର୍ କଟର୍ ଇତ୍ୟାଦି ବ୍ୟବହାର କରନ୍ତି । ସେସବୁ କୁ ଦେଖି ମୁଁ ଖୁବ୍ ଖୁସି ହୁଏ । ସେମିତି ପଢା ଟେବୁଲରେ ଅନେକ ନୂଆ, କୌତୁକିଆ ଜିନିଷ ରଖିଥାନ୍ତି, ଏସବୁ ଏକ ମ୍ୟାଜିକ୍ ପରି । ସେଥିପାଇଁ ବୋଧେ ଆଜିଯାଏଁ ଷ୍ଟେସ୍‌ନାରୀ ଜିନିଷର ଦୋକାନ ମୋର ଅତି ପ୍ରିୟ ଓ ମୁଁ ନୂଆ ନୂଆ ପେନ୍ ବ୍ୟବହାର କରିବାକୁ ବହୁତ ଭଲ ପାଏ । ଜିନ୍ଦି ଓ ଶାମୁ ମତେ ପେନ୍, ପେପର୍ ଓ ରାଇଟିଙ୍ଗ୍ ପ୍ୟାଡ୍ ଆଦି ଉପହାର ବି ଦିଅନ୍ତି ।

ମାମୁ ଘର ଗାଁକୁ ପିଲାଦିନେ ଗଲେ ମୋର ଗୋଟିଏ ଆକର୍ଷଣ ଥାଏ କି ମାମୁଙ୍କ ରୁମ୍‌ରେ ତାଙ୍କର ଘର ଭର୍ତ୍ତି ଗପ, ଗୀତ, ଚିତ୍ର, ଉପନ୍ୟାସ, ମାଗାଜିନ୍ (ଉଭୟ ଇଂରାଜୀ ଓ ଓଡ଼ିଆ) ପୁରୁଣା ଜହ୍ନମାମୁ ଆଦି ଦେଖିବା । ମୁଁ ଭାବେ ଏଇଥର ସବୁ ପଢି ଦେବି କିନ୍ତୁ ସବୁଥର ବହୁତ କିଛି ଆଉ ଅରକୁ ରହିଯାଏ ।

ସେହି ବହିମାନଙ୍କ ଗଦା ଭିତରୁ ଥରେ ମାମୁଙ୍କ କଲେଜ୍ ସମୟର ଏକ ହାତ ଲେଖା କବିତା ଖାତା ପାଇଥିଲି ଯ ଯାହାକୁ ମୁଁ ପଢିଥିଲି ଓ ନିଜ ସହିତ ଭୁବନେଶ୍ୱର ବି ଆଣି ଆସିଥିଲି । ସେ ହିଁ ମତେ ପିଲାବେଳୁ ଉତ୍ସାହିତ କରିଥିଲେ ଲେଖିବା ପାଇଁ । ସେ କୁହନ୍ତି ଗଦ୍ୟକୁ ପଦ୍ୟରେ ଲେଖେ, ତୁ ଭଲ ଲେଖି ପାରିବୁ ।

ନାଟକ ପାଇଁ ମୋର ସୌକ ବା ରୁଚି ବି ମାମୁ ଓ ବୋଉ ପାଇଁ । ତାଙ୍କ ଡ୍ରାମା ସ୍କ୍ରିପ୍ଟ ଓ ଆଲୋଚନା ବହୁତ ମାତ୍ରାରେ ପ୍ରବର୍ତ୍ତାଇଛି ମଞ୍ଚ ଓ ଅଭିନୟ ପାଇଁ ।

ମାମୁଙ୍କ ଘରେ କବିତା ଆବୃତ୍ତି ଓ ସାହିତ୍ୟ ଆଲୋଚନା ଆମ ସମସ୍ତଙ୍କର ଅତ୍ୟନ୍ତ ପ୍ରିୟ । କେବଳ ଜଣେ ଏଥିରେ ଖୁସି ନ ଥାଏ, ସେ ହେଉଛି "ଜିନ୍ଦି" । ତା'ର କାରଣ ଜିନ୍ଦି ଓଡିଆ ସାହିତ୍ୟ ସମ୍ମାନର ଛାତ୍ରୀ ଓ ସେଥିରେ ଏମ୍.ଏ ମଧ୍ୟ ଏବଂ ତା'ର ର୍‌ୟାଗିଙ୍ଗ୍ ହେଇଯାଏ ଏ ଆସରରେ । ଆମେ ଖୁବ୍ ହସୁ ଯେତେବେଳେ ମାମୁ ଜିନ୍ଦିର କ୍ଲାସ୍ ନେଇଯାନ୍ତି ।

ଇନ୍‌ଷ୍ଟାଣ୍ଟ କୁଇଜ୍ କମ୍ପିଟେସନ୍, ଲାଇଭ୍ ପେଟିଙ୍ଗ୍ ଓ ତା' ସହିତ ଗୀତ ଓ ତା'ପରେ ପୁରସ୍କାର ବି ଦିଆଯାଏ । ରାତିରେ ରହିଲେ ୬ଜଣିଆ (ଐସଶଷ ଙ୍କରଭଙ୍ଗବକ୍ଷ ବଭସକ୍ଷସଙ୍ଗଚ) ତାସ୍ ଖେଳ, ତା ସହ ଖିଆପିଆ ଖୁବ୍ ଚାଲେ । ଖୁବ୍ ମଜା ମାମୁଙ୍କ ଦଳରେ ରହିଲେ କାରଣ ତାସ୍ ଖେଳର ସବୁ ନିୟମ ତାଙ୍କରି ଅନୁସାରେ ବଦଳି ଯାଇପାରିବ । ଖାଇବା ଓ ଖୁଆଇବାରେ ପ୍ରବଳ ରୁଚି ରଖନ୍ତି । ମିଠା ଖାଇବା ଖୁବ୍ ପସନ୍ଦ କରନ୍ତି । ବୋଉ ହାତର କ୍ଷୀରି ଭାରି ଭଲ ପାଆନ୍ତି । ଖରାଦିନେ ନିଶ୍ଚୟ ଲସି ତିଆରି ହେବ ଓ ଯାହାର ସ୍ୱାଦ ଯେ ପିଇଛି ସେ ହିଁ ଜାଣେ । ଫ୍ରୁଟ୍ ସାଲାଡ୍ ତିଆରି କରନ୍ତି, ଯାହା ଆମେ ତାଙ୍କ ଠାରୁ ହିଁ ଶିଖିଛୁ । ରାତି ଅଧରେ ଚୁଡାଘସା ତିଆରି କରିବେ, ବିଭିନ୍ନ ଚଟଣୀ ତିଆରି କରିବେ ଓ ଖୁଆଇବେ ।

ସବୁ କାମରେ ନିଜର ଏକ ପର୍ସନାଲ୍ ଟଚ୍ ଦିଅନ୍ତି । ପୁରୁଣା ବସ୍‌ଷ୍ଟାଣ୍ଡ କଫି ହାଉସ୍ ମିଟିଂ ପାଇଁ ନିଜ ହାତରେ (ଶକ୍ଷକ୍ସଢ଼ଚ କ୍ରବକ୍ତରଢ଼) ରେ ଠୁଙ୍ଗା ତିଆରି କରିକି ନେବେ ଯେଉଁଥିରେ ଜଳଖିଆ ଖିଆଯାଏ । ଅତ୍ୟନ୍ତ ଭିନ୍ନ ଓ ସୁନ୍ଦର ।

ସେ ବର୍ତ୍ତମାନରେ ବିଶ୍ୱାସ କରୁଥିବା ଓ ବର୍ତ୍ତମାନରେ ବଞ୍ଚୁଥିବା ମଣିଷଟିଏ । ଘରେ ସେତେବେଳେ ଇନ୍‌ଭଟର୍ ଲାଗି ନଥାଏ, ସେ ସମୟରେ ଲାଇନ୍ କଟିଲେ ତାଙ୍କର ପଢିବା ଓ ଲେଖିବାରେ ଅସୁବିଧା ହେଲା । ତ ଦିନେ ଅଫିସ୍‌ରୁ ଫେରିବା ସମୟରେ ଗୋଟେ ପୋଟେବଲ୍ ଇନ୍‌ଭଟର୍ ଆଣିକି ପହଞ୍ଚିଗଲେ । ଯେଉଁଥିରେ ଗୋଟେ ଫ୍ୟାନ୍ ଓ ଲାଇଟ୍ ହିଁ ଚାଲିବ ।

ପ୍ଲାନିଙ୍ଗ୍ ଓ ପ୍ରେଡିଗ୍‌ସନ୍‌ରେ ବିଶ୍ୱାସ କରନ୍ତିନି । ସେ ବର୍ତ୍ତମାନ କଣ ଭାବୁଛନ୍ତି ଓ ସେ ବର୍ତ୍ତମାନ କଣ ଚାହୁଁଛନ୍ତି ସେ ଅନୁସାରେ ନିଷ୍ପତ୍ତି ନିଅନ୍ତି । ଆଉ ଦିନେ ହଠାତ୍ ଏକ ଏମ୍.ପି.ଥ୍ରି ପ୍ଲେୟାର୍, ପୁରୁଣା ଗଜଲ ଓ ଅକ୍ଷୟ ମହାନ୍ତିଙ୍କ ସିଡି ନେଇକି ଆସିଲେ । ତା' ପରଠାରୁ ସେ ଘରେ ଥିବେ ମାନେ ଗୀତ, ଛାନ୍ଦ, ଚମ୍ପୂ ସବୁ ବାଜେ । ଦିନେ ମାଇଁ କୌଣସି ଏକ କାରଣ ପାଇଁ ମାମୁଙ୍କ ଉପରେ ରାଗିଥାନ୍ତି । ସେହି ସମୟରେ ମାମୁ ଗୀତ ବଜେଇଲେ "ମୋ ରଙ୍ଗଲତା ରୁଷିଛି" । ଆମେ (ଜିନ୍ଦି, ଶାମୁ, ମୁଁ ଓ ମାମୁ) ବହୁତ ହସିଛୁ ସେଦିନ ।

ମାମୁଙ୍କ ସହ ଯୋଡି ହୋଇଥିବା ପ୍ରତି ଘଟଣାର ଏକ ସ୍ୱତନ୍ତ୍ର ଅନୁଭୂତି ଏବଂ ସେ ସବୁକୁ ଲେଖି ବସିଲେ କାଗଜ ଓ ସମୟ ଅଣ୍ଟିବନି । ୫ବର୍ଷ ପୂରି ଗଲାଣି, ଉପରଲିଖିତ କୌଣସି ଗୋଟିଏ ଘଟଣାର ପୁନରାବୃତ୍ତି ହେଉନି କି ହେଇପାରିବନି । ଆମେ ଆଉ ସେପରି ଲସି ପିଇନୁ, କବିତା ଆବୃତ୍ତି ବି ହଉନି, ଜିନ୍ଦିକୁ ବି ଆଉ ର୍‌ୟାଗିଙ୍ଗ୍ କରୁନୁ । କିନ୍ତୁ ତାଙ୍କ ସହ ବିତେଇଥିବା ପ୍ରତିଟି ମୂହୁର୍ତ୍ତ ଏବେ ବି ସତେଜ ଓ ଜୀବନ୍ତ । ଆମକୁ ଛାଡି ଚାଲିଗଲା ପରେ ବି ଗୋଟିଏ ଶିକ୍ଷା ଦେଇ ଯାଇଛନ୍ତି ସେ - "ଜୀବନକୁ ନିଜ ସର୍ତ୍ତରେ ଜୀଇଁବା ଦରକାର" । ☐





# ସୁରେଶ ମାମୁଙ୍କୁ ଯେମିତି ଜାଣେ

## ପୂର୍ଣ୍ଣଚନ୍ଦ୍ର ମହାରଣା

ମୋର ଅନନ୍ତଙ୍କ ବନ୍ଧୁ ଅଜୟ ସ୍ୱାଇଁ ସୁରେଶ ବଳବନ୍ତରାୟଙ୍କ ସହିତ ମତେ ପ୍ରଥମେ ପରିଚୟ କରେଇ ଦେଇଥିଲେ। ସମ୍ପର୍କରେ ସୁରେଶ ବଳବନ୍ତରାୟ ଅଜୟଙ୍କର ମଳାସୁର। ସେଥିପାଇଁ ମୁଁ ତାଙ୍କୁ ମାମୁ ଡାକିଲି। ମୋ ସଙ୍ଗାତ ରଜନୀ ରଂଜନ ମାମୁ ଡାକିଲେ ଏମିତି ମାମୁ ଡାକୁ ଡାକୁ ସେ ସୁରେଶ ବଳବନ୍ତରାୟରୁ ସୁରେଶ ମାମୁ ହେଇଗଲେ ସମସ୍ତେ ତାଙ୍କୁ ସୁରେଶ ମାମୁ ଡାକିବା ଆରମ୍ଭ କଲେ।

ପୁରୁଣା ବସ୍‌ଷ୍ଟାଣ୍ଡ ଖଟି କହିଲେ ସୁରେଶ ମାମୁ ଯୋଉଦିନ ଖଟିକୁ ମାମୁ ଆସନ୍ତି ନାହିଁ ସେଦିନ ସବୁ ପାଣିଚିଆ ଲାଗେ। ମାମୁ ପହଞ୍ଚିଗଲେ ଗୋଟେ ଚାପା ଗୁଞ୍ଜରଣ ଖେଳିଯାଏ। ଆରମ୍ଭ ହୁଏ ଚା ପିଆ କବିତା ଆଲୋଚନା ଗପରେ ଗପରେ ସଞ୍ଜ ବିତେ। କିଛି କବିଙ୍କୁ ମାମୁ ମୃଦୁ ଗାଳି କରନ୍ତି। ସେ କବିମାନେ ମାମୁଙ୍କୁ ଦେଖି ଦେଖି ଚୁପ୍‌ଚାପ୍ ମୁହଁ ଲୁଚେଇ ଠିଆ ହୁଅନ୍ତି। ଅବଶ୍ୟ ମାମୁ କେବେ କାହାକୁ ତାଚ୍ଛଲ୍ୟ କି କଟାକ୍ଷ କରିବାର ମୁଁ କେବେ ଶୁଣିନାହିଁ ମାମୁ ଯାହାକୁ ଯାହା କୁହନ୍ତି ମୁହାଁମୁହିଁ ସିଧାସିଧା।

ସୁରେଶ ମାମୁ ଅଜୟଙ୍କୁ ଅଜୟ ବାବୁ ବୋଲି ସମ୍ବୋଧନ କରନ୍ତି। ଖୁବ୍ ଶ୍ରଦ୍ଧା କରନ୍ତି ମଧ୍ୟ ଆଉ ଅଜୟ ବି ମାମୁ ଖୁବ୍ ସମ୍ମାନ କରନ୍ତି ତାଙ୍କ କଥାକୁ ମୁଣ୍ଡରେ ମୁଣ୍ଡେଇଥାନ୍ତି। ଦିନେ ଗୋଟେ ଡକ୍ୟୁମେଣ୍ଟାରୀ ସିନେମା କରିବା ପାଇଁ ମାମୁ ଅଜୟଙ୍କୁ ପ୍ରସ୍ତାବ ଦେଲେ। ଅଜୟ ବି ରାଜି ହେଇଗଲେ। ସେତେବେଳେ ଦୂରଦର୍ଶନ ଡିଡି୧ ଚ୍ୟାନେଲରେ କେବଳ ଓଡ଼ିଆ କାର୍ଯ୍ୟକ୍ରମ ପ୍ରଚାରପ୍ରସାର ହେଉଥିଲା। ଆଜିଭଳି ଏତେ ଗୁଡ଼ିଏ ଓଡ଼ିଆ ଚ୍ୟାନେଲ୍ ନଥିଲା। ମୁଣ୍ଡପୋତା କେଳାଙ୍କ ଜୀବନୀ ଉପରେ ଗୋଟିଏ ଡକ୍ୟୁମେଣ୍ଟାରୀ ସିନେମା କରିବା ପାଇଁ ସ୍ଥିର କରାଗଲା।

ତା' ପାଇଁ ଆନୁସଙ୍ଗିକ ଖର୍ଚ୍ଚ କାଗଜପତ୍ର ମଧ୍ୟ ପ୍ରସ୍ତୁତ କରାଗଲା ଦୂରଦର୍ଶନରୁ ପରିମିଶନ ଆସିଲା ସୁଟିଙ୍ଗ୍ ପାଇଁ ଦିନ ଧାର୍ଯ୍ୟ କରାଗଲା। ମାମୁ ସ୍କ୍ରିପ୍ଟ ତିଆରି କଲେ ହେଲେ ଟଙ୍କା ଖର୍ଚ୍ଚ କରିବ କିଏ? ସେଥିପାଇଁ ଜଣେ ପ୍ରଯୋଜକ ଦରକାର। ମାମୁ ପବିତ୍ର ପ୍ରଧାନଙ୍କୁ ଅନୁରୋଧ କରି ପ୍ରଯୋଜକ ବନେଇ ଦେଲେ। ଅଜୟ ହେଲେ ଡିରେକ୍ଟର, ଦିଲ୍ଲୀପ ବଳବନ୍ତରାୟ ସହଯୋଗୀ ଓ ମୁଁ ପ୍ରଡକ୍ସନ ଦାୟିତ୍ୱ ତୁଲେଇଲି। ସୁଟିଂ ସରିଲା ଦୂରଦର୍ଶନରେ ମୁଣ୍ଡପୋତାକେଳା ପ୍ରସାରିତ ହେଲା। ସେ ଦିନ ଦେଖିବ ମାମୁଙ୍କର ଖୁସି ଏତେ ଖୁସିହବା ମାମୁଙ୍କୁ ମୁଁ ଆଗରୁ କେବେ ଦେଖି ନଥିଲି। ପ୍ରକୃତରେ ମାମୁଙ୍କ ପାଇଁ ହିଁ ଆମେ ଦୁଇଟି ଡକ୍ୟୁମେଣ୍ଟାରୀ କରିପାରିଥିଲୁ। ଗୋଟିଏ ହେଲା "ମୁଣ୍ଡପୋତା କେଳା" ଓ ଆଉ ଗୋଟିଏ କୋରାପୁଟର "ଶାବର ଶ୍ରୀକ୍ଷେତ୍ର" ଅବଶ୍ୟ ପରେ ଆମେ ପାଞ୍ଚ ଛଅଟି ଡକ୍ୟୁମେଣ୍ଟାରୀ କରି ସଫଳତା ଲାଭ କରିଛୁ। ସୁରେଶ ମାମୁ ଏକାଧାରରେ ଜଣେ କବି, ଗାଳ୍ପିକ, ପ୍ରାବନ୍ଧିକ, ନାଟ୍ୟକାର, ଚିତ୍ରଶିଳ୍ପୀ, ଦକ୍ଷ ସଂଗଠକ ଓ ସଂଗ୍ରାହକ ଥିଲେ। ସବୁବେଳେ ତାଙ୍କର ନୂଆ କିଛି କରିବା ପାଇଁ ଇଚ୍ଛା ଓ ଉଦ୍ଦେଶ୍ୟ ରହିଥିଲା। ଚଉଷଠି ଯୋଗିନୀ ମହୋତ୍ସବ ତାଙ୍କ ପ୍ରଚେଷ୍ଟାର ଫଳ।

ପୁରୁଣା ବସ୍‌ଷ୍ଟାଣ୍ଡ ଖଟିରେ ଦିନେ ମାମୁ ମତେ ଓ ମୋ ସଙ୍ଗାତ ରଜନୀ ରଂଜନଙ୍କୁ ଡାକି କହିଲେ- ଚଉଷଠି ଯୋଗିନୀ ପୀଠରେ ଗୋଟେ ମହୋତ୍ସବ କଲେ କେମିତି ହୁଅନ୍ତା? ପୂର୍ଣ୍ଣବାବୁ ତୁମେ ରୁନା ପଣ୍ଡାଙ୍କ ସଙ୍ଗେ କଥାବାର୍ତ୍ତା ହୁଅ। ବନ୍ଧୁ ରୁନା ପଣ୍ଡା ଓ ମୁଁ ଏକାଠି ମିଶି ବ୍ୟବସାୟ କରୁଥାଉ, ମୁଁ ରୁନାବାବୁଙ୍କୁ କହିଲି ମହୋତ୍ସବ କଥା। ରୁନାବାବୁ ପ୍ରଥମେ ଟିକେ କୁନ୍ଥୁକୁନ୍ଥୁ ହେଲେ ଓ କହିଲେ ମହୋତ୍ସବ କଲେ ତ ଗୁଡ଼ାଏ ଟଙ୍କା ଖର୍ଚ୍ଚ ହେବ ଏତେ ଗୁଡ଼େ ଟଙ୍କା ଆସିବ କୁଆଡୁ? ତେବେ ଯା ହେଉ ରୁନାବାବୁ ଶେଷରେ ରାଜି ହୋଇଗଲେ। ରୁନାପଣ୍ଡାଙ୍କ ଧର୍ମପତ୍ନୀ ପ୍ରତିଭା ପଣ୍ଡାଙ୍କର 'ନୃତ୍ୟ ପ୍ରତିଭା' ନାମରେ ଏକ ନୃତ୍ୟଶିକ୍ଷା

ଅନୁଷ୍ଠାନ ଥାଏ। ନିଜେ ପ୍ରତିଭା ନୃତ୍ୟଗୁରୁ ଓ ଓଡ଼ିଶୀ ନୃତ୍ୟାଙ୍ଗନା ସେ ଅନୁଷ୍ଠାନଟିକୁ ଚଳାଉଥାନ୍ତି। ସେଇ ନୃତ୍ୟପ୍ରତିଭା ଆନୁକୂଲ୍ୟରେ ୨୦୦୭ ମସିହା ଅକ୍ଟୋବର ମାସରେ ହୀରାପୁର ନିକଟସ୍ଥ ଚଉଷଠି ଯୋଗିନୀ ମନ୍ଦିର ପ୍ରାଙ୍ଗଣରେ ଗୋଟେ ମିଟିଙ୍ଗ୍ କରାଗଲା। ଆମ ସହିତ କିଛି ଗ୍ରାମବାସୀ ମଧ୍ୟ ଯୋଗଦେଲେ। ସୁରେଶ ମାମୁ ସଭାପତି, ରଜନୀରଂଜନ ଉପସଭାପତି, ପ୍ରତିଭା ସଂପାଦକ, ରୁନାପଣ୍ଡା କୋଷାଧ୍ୟକ୍ଷ, ମୁଁ ଓ ମୋ ସହିତ ଆଉ କିଛି ଲୋକ ସାଧାରଣ ସଭ୍ୟ ଭାବେ କାର୍ଯ୍ୟ କଲୁ। ହୀରାପୁର ଗଡ଼କଣ୍ଟୁଣିଆ ଗ୍ରାମର ଜଣେ ଉତ୍ସାହୀ ଯୁବକ ଦିଲ୍ଲୀପ ମାର୍ଥା, ପାଳାକାର ଅରକ୍ଷିତ ମହାନ୍ତି, ବାଳକାଟିର ଯୁବନେତା ଶିବ ମଲ୍ଲିକ, ଅଜୟ ତ ସବୁବେଳେ ଆମ ସାଥିରେ ଥା'ନ୍ତି ସମସ୍ତେ ମିଶି ଆରମ୍ଭ କଲୁ ଚଉଷଠି ଯୋଗିନୀ ମହୋତ୍ସବ। ଏହା ତିନି ଦିନ ଧରି ଚାଲିଲା ଡିସେମ୍ବର ୨୩, ୨୪, ୨୫ ଆଜକୁ ୧୨ବର୍ଷ ହେଲାଣି ଚାଲି ଆସୁଛି। ସୁରେଶ ମାମୁଙ୍କ ଦେହାନ୍ତ ପରେ ଏବେ ଡଃ ରଜନୀରଂଜନ ଏହାର ସଭାପତି।

ମାମୁ ମରିବା ପୂର୍ବରୁ ଆଉ ଗୋଟିଏ ଫର୍ଦ୍ଦ ଚଉଷଠି ଯୋଗିନୀ ମହୋତ୍ସବ ସହ ଯୋଡ଼ି ଦେଇଥିଲେ, ତାହା ହେଉଛି ସାହିତ୍ୟ। ପ୍ରତିବର୍ଷ ସାହିତ୍ୟ ପାଇଁ ଜଣେ ବରିଷ୍ଠ ଓ କବିତା ପାଇଁ ଜଣେ କନିଷ୍ଠ କବିଙ୍କୁ ବଛାଯାଇ ପୁରସ୍କୃତ କରାଯାଉଅଛି।

ଚଉଷଠି ଯୋଗିନୀ ମହୋତ୍ସବ ମାମୁଙ୍କର ମାନସକନ୍ୟା। ଯେ ଯାଏ ଚଉଷଠି ଯୋଗିନୀ ମହୋତ୍ସବ ବଞ୍ଚିଥିବ ସେଯାଏ ମାମୁ ସୁରେଶ ବଳବନ୍ତରାୟ ଆମ ସହ ସୂକ୍ଷ୍ମ ଦେହରେ ବିଚରଣ କରୁଥିବେ ଏହା ନିରାଟ ସତ୍ୟ।

ବାଳକାଟୀ, ଖୋର୍ଦ୍ଧା
ପିନ୍-୭୫୨୧୦୦



ସୁରେଶ ବଳବନ୍ତରାୟ ସୃଜନ ସମ୍ମାନ : ୨୦୧୮

ପଦ୍ମଶ୍ରୀ ଡ. ଇଲିଆନା ସିତାରିଷ୍ଟି
ନୃତ୍ୟଶିଳ୍ପୀ ଓ ସଂସ୍କୃତି ଗବେଷକ
ଭୁବନେଶ୍ୱର



# ବଳବନ୍ତ ରାୟ ଥିଲେ ବୋଲି...

## ଡକ୍ଟର ଦିଲ୍ଲୀପ କୁମାର ତ୍ରିପାଠୀ

କାନ କୁଣ୍ଢେଇଲା ଭଳିଆ ସମୟ ପଳଉଚି । ଟିକିଏ ଅପେକ୍ଷା ବି କରୁନି । ଦେଖୁ ଦେଖୁ କେତେ ବର୍ଷ ହେଇଗଲାଣି । ହେଇଟି ଭଳିଆ ଲାଗୁଚି, ସୁରେଶ ବାବୁ ଆମ ପାଖରେ ଥିଲା ଭଳି ଲାଗୁଛନ୍ତି । ଲାଗିବେନି ବା କାହିଁକି ? ସଂସାରରେ ଯିଏ ଏକ ମହତ୍ ଉଦ୍ଦେଶ୍ୟ ଛାଡ଼ିଦେଇଯାଏ ସିଏ ତ ପାଖେ ପାଖେ ଥିଲା ଭଳି ଲାଗିବ ହିଁ ଲାଗିବ । ଏ ବିବେକ, ଏ ସଂସାରରେ ରଜ ସତ୍ୱ ତମର ଚରିତ୍ର ନେଇ ମଣିଷମାନେ ଆତଯାତ ହୁଅନ୍ତି । ରାଜସିକ ବ୍ୟକ୍ତିଟିଏ ନିଜର ଗର୍ବ, ଅହଙ୍କାର, ଜାତି, ବଂଶବାଦକୁ ଆପଣେଇ ସମାଜରେ ଆଧିପତ୍ୟ ବିସ୍ତାର କରିବସେ । ଖାଦ୍ୟପେୟ, ପରିଧାନ ଓ ବ୍ୟବହାରରେ ରାଜସିକତା ତା'ର ସମାଜ ଆଖିରେ ଉଛୁଳି ହେଇପଡ଼େ । ଗର୍ବ-ଅହଂକାର ଥିଲେ ହେଁ, ସମାଜରେ ଯେକୌଣସି ପ୍ରକାରେ ନିଜକୁ ବଡ଼ ବୋଲି ପ୍ରତିପାଦିତ କରିବାକୁ ସେ ଚେଷ୍ଟା କରେ । କେବଳ ଯେ ଆମିଷ, ପିଆଜ, ରସୁଣ ନ ଖାଇଲେ ଜଣେ ବ୍ୟକ୍ତି ସାତ୍ୱିକ ହୁଏ, ସେମିତି କିଛି ତର୍କ କରାଯାଇ ନପାରେ । କାରଣ, ସତ୍ୱଗୁଣଧାରୀ ମଣିଷଟିଏ ସମାଜ, ଜାତି ତଥା ରାଷ୍ଟ୍ରର କ୍ଷତି ଋହିଁ ନଥାଏ । ଖାଦ୍ୟ, ବସ୍ତ୍ର ବ୍ୟବହାରରେ ସାତ୍ୱିକତା ଅବଲମ୍ବନ କରେ । ପିମ୍ପୁଡ଼ି ଭଳି କ୍ଷୁଦ୍ରରୁ କ୍ଷୁଦ୍ର ରହି ମହତ୍ କାର୍ଯ୍ୟ କରିବାକୁ ଆଗେଇ ଆସେ । ଯଦ୍ୱାରା ସେ ନିଜେ ସୁଖୀ ହେବା ସହ, ପରିବେଶକୁ ମଧ୍ୟ ସୁଖୀ ରଖିବାକୁ ଚେଷ୍ଟା କରେ । ଏହା ତା'ର ରାଜନୈତିକ, ସାମାଜିକ, ସାଂସ୍କୃତିକ, ଅର୍ଥନୈତିକ ଆଋର ବ୍ୟବହାର ଉପରେ ନିର୍ଦ୍ଧାରିତ ହୋଇଥାଏ । ଏହାହିଁ ସାତ୍ୱିକତାର ଧର୍ମ । ତାମସିକତାର ଭୟାବହତା ସମାଜରେ ଅମଙ୍ଗଳକାରକ ହୁଏ । ତମଗୁଣର ବ୍ୟକ୍ତିଟିଏ ହାଣକାଟ, ଋେରି-ଡକାୟତି, ଧର୍ଷଣାଦି କାର୍ଯ୍ୟରେ ଲିପ୍ତ ରହେ । ସାତ୍ୱିକ ତଥା ରାଜସିକ ଲୋକମାନେ ମଧ୍ୟ ତା'ର ଗମ୍ଭୀର କାମର ଶୀକାର ହୁଅନ୍ତି । ସମାଜ ଖଣ୍ଡ ଖଣ୍ଡ ହୁଏ । ବ୍ୟଭିଋର ବଢ଼ିଋଲେ । ନ୍ୟାୟ ପ୍ରକ୍ରିୟାରେ ବାଧା ସୃଷ୍ଟି ହୁଏ । ରାଜନୀତି ବିଚଳିତ ହୋଇପଡ଼େ । ସଂସ୍କୃତି ଧ୍ୱଂସ ଆଡ଼କୁ ଗତି କରେ । ଏସବୁ ସତ୍ତ୍ୱେ ସମାଜରେ ସୁଖର ବାତାବରଣଟିଏ ପ୍ରତିଷ୍ଠା କରିବାକୁ ସାତ୍ୱିକ ସମାଜର ଆବଶ୍ୟକତା ବଢ଼ିବା ସ୍ୱାଭାବିକ ହୁଏ । ଏସବୁ କଥା କହିବାର ପଛରେ ସୁରେଶ ବଳବନ୍ତରାୟଙ୍କୁ ମୁଁ ସାତ୍ୱିକ ସମାଜର ଜଣେ ଅଗ୍ରଧ୍ୱଜଧାରୀ ମଣିଷ ଭାବେ ସ୍ୱୀକାର କରୁଛି । ସାଂସ୍କୃତିକ ପରିଚର୍ଯ୍ୟାକୁ ଆଗକୁ ନେବା ପାଇଁ ସୁରେଶ ବାବୁଙ୍କ ଅବଦାନ ଓଡ଼ିଆ ଭାଷା, ସାହିତ୍ୟ, ଇତିହାସ ତଥା ଆଲୋଚନାତ୍ମକ ରଚନାମାନଙ୍କରେ ଉକୁଟି ହେଇପଡ଼େ ।

ଦିନଟି ମନେପଡୁନି । ଦିଲ୍ଲୀରେ ମୋର ଅତିଥି ଥିଲେ ସୁରେଶ ବାବୁ । ବୋଧହୁଏ ଗଣେଶ ପୂଜା ବେଳ । ଗାଡ଼ିରେ ଯିବାବେଳେ ଡ଼େବିରିପଟ ରାସ୍ତାକଡ଼କୁ ଦେଖି ପ୍ରଶ୍ନଟିଏ ପଋରିଲେ- 'ଦିଲ୍ଲୀପ ! ଏ ଗଣେଶର ହାତୀ ମୁଣ୍ଡ ତ ଲାଗିଛି, ହେଲେ ଏ ମୂର୍ତ୍ତିସବୁ ଧଳା, ଗୋଲାପୀ କାହିଁକି ? ଶିବପୁତ୍ର ତ ଭାରତରେ ଜନ୍ମ ହେଇଥିଲେ । ଶିବ ତାଙ୍କର ମୁଣ୍ଡ ଛେଦନ କରି ହାତୀ ମୁଣ୍ଡ ଲଗେଇ ଦେଲେ । ଭାରତରେ କ'ଣ ଧଳା ହାତୀ ଅଛନ୍ତି ? ବୋଧେ ଶିବ ଆଫ୍ରିକାରୁ ମଗେଇ ଥିଲେ । ମୋ ମୁଣ୍ଡ ଘାବରେଇ ଗଲା । ଏମିତି କଥା ମୋ ମୁଣ୍ଡରେ ପଶିଲାନି କି କେବେ ପଶି ବି ନଥିଲା । କଥାଟି ହଜମ ହେଉ ନଥିଲେ ବି ଅପ୍ରିୟ ସତ । ମୁଁ ହସିଦେଲି । ସୁରେଶବାବୁ ତାଙ୍କ କଥାରେ ଅଟଳ । ପୁଣି ଦୋହରେଇ କହିଲେ- 'ଦିଲ୍ଲୀପ, ତମେ ଜାଣିଚ, ୧୮୮୪ ମସିହାରେ ଏ ପୂଜା ମହାରାଷ୍ଟ୍ରରେ ଆରମ୍ଭ ହୋଇଥିଲା । ଲୋକମାନ୍ୟ ବାଳଗଙ୍ଗାଧର ତିଳକ ଏହାର ପ୍ରଋର ପ୍ରସାର କଲେ । ମୁମ୍ବାଇର ସିଦ୍ଧି ବିନାୟକ ମନ୍ଦିରରେ ସେତେବେଳେ ଜାତିବାଦର କଥା ବଳବଉର ଥିଲା । ସବର୍ଣ୍ଣମାନେ ହିଁ ମନ୍ଦିର ଭିତରକୁ ଯାଉଥିଲେ । ତେଣୁ ଏହାକୁ ସାର୍ବଜନୀନ କରିବା ପାଇଁ ଗଳି ଗଳି, ଅନୁଷ୍ଠାନମାନଙ୍କରେ ମାଟିମୂର୍ତ୍ତି ପୂଜା ଆରମ୍ଭ କରାଗଲା, ଯଦ୍ୱାରା ଅସବର୍ଣ୍ଣମାନେ ମଧ୍ୟ ନିଜନିଜ ଯାଗାରେ ଗଣେଶ ପୂଜା କଲେ କିନ୍ତୁ ସିଦ୍ଧିବିନାୟକ ମନ୍ଦିର ଭିତରକୁ



ଆସିବାକୁ ଆଉ ଇଚ୍ଛା ବି କରିନଥିଲେ । ଏ ପୂଜା ଏମିତି ଜନପ୍ରିୟ ଯେ ପୂଜା ନାଆଁରେ ଅପକର୍ମ ବି ବଢ଼ିଲା । ମୂର୍ତ୍ତି ସ୍ଥାୟୀ ପୀଠରେ ନିଶା ଓ ମାଦକଦ୍ରବ୍ୟର ବେପାର ମଧ ହେଲା । ପୂଜା ନାଆଁରେ ଭଲ ମନ୍ଦ ଲୋକ ମଧ ଏକାଠି ହେଲେ । ପୋଲିସ ଏଠାରେ ପଶିବାକୁ ବି ସାହସ କଲା ନାହିଁ । ପୂଜା ମାଧମରେ ଏକ ସାଂସ୍କୃତିକ ଏକତ୍ରୀକରଣ କରାଯାଏ । କିନ୍ତୁ ଅପସଂସ୍କୃତିର ଗଡ଼ ହେଇଯିବା ଜାତି ପାଇଁ ନିନ୍ଦନୀୟ । ସୁରେଶ ବାବୁଙ୍କ ତର୍କଶୀଳ ମନ୍ତବ୍ୟ ମତେ ଖୁବ୍ ଆଲୋଡ଼ିତ କଲା । ଫେଣେଇ ଫେଣେଇ ମୁଁ ବହୁତ ଭାବିଛି । ପୁଣି ଚାଣକ୍ୟ ନୀତିକୁ ପଢ଼ିଛି । ଶେଷରେ ଉପନୀତ ହେଲି ଯେ ସମାଜରେ ମଙ୍ଗଳକାରୀ ଚିହ୍ନଟିଏ ଛାଡ଼ିବାକୁ ହେଲେ ଉଚିତ ବିବେକ, ଉଚିତ ଶିକ୍ଷା ତଥା ବୈଜ୍ଞାନିକ ଅବବୋଧର ଆବଶ୍ୟକତା ନିହାତି ରହିଛି । ବ୍ରତ ଉପବାସରେ ଯେ ସିଦ୍ଧି ମିଳିଯାଏ, ସେ କଥା ବି ମନରୁ ଧୀରେ ଧୀରେ ଦୂରେଇ ଗଲା । ମନରେ ଅନେକ କଥା ମୁଣ୍ଡ ଟେକିଲେ । ଏତେ ଧନ ସାରି ପୂଜା ପାର୍ବଣରେ ଲୋକଦେଖା ହବା ମତେ ବ୍ୟକ୍ତିଗତଭାବେ ଭଲ ଲାଗିଲା ନାହିଁ । ଯେଉଁ ରାଜ୍ୟରେ ଆବର୍ଜନା କୁଣ୍ଡରୁ ଅଇଁଠା ଖଲି ଉଠେଇ ଦରିଦ୍ରଟିଏ ଖାଉଛି, ସେଇଠି ରାଜକୀୟତାର ପରାକାଷ୍ଠା କେତେଦୂର ବିବେଚିତ ? କୌଣସି ଦେବୀ ଦେବତା କହିନାହାନ୍ତି ଯେ ସ୍କୁଲଟିଏ କର, ଚିକିତ୍ସାଳୟଟିଏ କର, ଭଲ ଶିକ୍ଷାନୁଷ୍ଠାନଟିଏ କରି ଭଲ ନାଗରିକ ତିଆରି କର କିମ୍ବା ସ୍ୱାସ୍ଥ୍ୟରକ୍ଷା କରି ଜୀବନ ବଞ୍ଚାଅ । ଏ ଲୋକଙ୍କୁ କେବଳ ଦେବୀ ଦେବତା ମନ୍ଦିର କରିବାକୁ ବୋଧେ କହୁଛନ୍ତି । ଲୋକଙ୍କ ଘରେ ବସିବାର ଜାଗା ନାହିଁ, ଏଇ ଦେବୀ ଦେବତାମାନେ ସୁନାବେଦୀରେ ସ୍ୱର୍ଣ୍ଣ ଅଳଙ୍କାରରେ ବିଭୂଷିତ ହୁଅନ୍ତି । ଶୌଚାଳୟଟିଏ ସଫା ନାହିଁ ବରଂ ଏଇ ବେଦୀ ଆରୁଢ଼ ମୂର୍ତ୍ତିଟିଏ ଇଟାଲିଏନ୍ ମାର୍ବଲ ବ୍ୟବହାର କଲେଣି । ବିଚିତ୍ର ଚିନ୍ତାଧାରା । ନାଗରିକର ସଠିକ୍ ନାଗରିକତ୍ୱକୁ ଆମେ ବୈଜ୍ଞାନିକ ଚିନ୍ତନ ଭିତରେ ଆପଣେଇବାକୁ ବୁଦ୍ଧି ବିସ୍ତାରୁ ନାହୁଁ । ସାତ୍ୱିକମାନଙ୍କ ହତ୍ୟା ହେବା ସହ ସମାଜ ଉତ୍ପୀଡ଼ିତ ହେଉଛି । ମୁଁ ଶେଷରେ କୌଣସି ମନ୍ଦିର, ଦେବୀ, ଦେବତା କାର୍ଯ୍ୟରେ ସାମିଲ ହେଲି ନାହିଁ । ପୂଜାପୂଜି ତ ଦୂରର କଥା ।

ସୁରେଶବାବୁ ଥିଲେ ବୋଲି ହୁଏତ ମୁଁ ପରିବର୍ତ୍ତିତ । ଅସମ୍ଭବ ଭାବେ ଗୀତା, ବେଦ, ସାହିତ୍ୟ, କବିତା ଅନର୍ଗଳ ଗାଇ ଯାଉଥିବା ସୁରେଶବାବୁ ଥିଲେ ସାତ୍ୱିକ । ମାଂସାହାରୀ ବ୍ୟକ୍ତି ଥିଲେ ହେଁ, ସମାଜମଙ୍ଗଳ ଥିଲା ତାଙ୍କର ଅନ୍ୟ ଏକ ପ୍ରକୃତି । ସାହିତ୍ୟ ସଂସ୍କୃତିକୁ ଆଗକୁ ଆଣିବାରେ, ଓଡ଼ିଆ ଜାତି କଥା କହିବାରେ ପ୍ରବୀଣ ବ୍ୟକ୍ତିଟିଏ ପୁଣି ତିଆରି ହେଇପାରୁନି । ସୁରେଶବାବୁ ପାଦଚିହ୍ନ ଛାଡ଼ି ଚାଲିଗଲେ ନାହିଁ, ତାଙ୍କର ପ୍ରେରଣା କେତେଜଣଙ୍କୁ ପ୍ରୋତ୍ସାହିତ କରିଛି, ମୁଁ ଜାଣିନି । ଯଦି କିଏ ପ୍ରୋତ୍ସାହିତ, ସେ ନିଶ୍ଚିତଭାବେ କହିବ ଯେ, ସୁରେଶ ବଳବନ୍ତ ରାୟ ଥିଲେ ବୋଲି.....

କଳା ଗବେଷକ / ଚିତ୍ରଶିଳ୍ପୀ
କେନ୍ଦ୍ର ଲଳିତକଳା ଏକାଡ଼େମି
ମୋ - ୯୮୧୧୨୮୭୯୧୦



# ସୁରଙ୍କ ହସ

**ସୁଜାତା ପ୍ରିୟମ୍ବଦା**

ସେଇ କଳା ମୁରୁମୁରିଆ ମୁହଁରେ କେତେବେଳେ ପାନ, କେତେବେଳେ ଗୁଟ୍‌ଖା, ନାଲି ଧୂସରିଆ ଦାନ୍ତ ତ ଦେଖିବା ସମୟେ ସମୟେ କଷ୍ଟ। ଆଖିରେ ଆଖି ପକାଇ ନଜର ଦେଇ କହିବା ବହୁତ କମ୍। କଥା କହିଲାବେଳେ ମୁରୁକି ହସ। ସେଥିରେ ପୁଣି ନଜର ତଳକୁ। ଆଶ୍ଚର୍ଯ୍ୟ ଲାଗେ କଥା କହିଲାବେଳେ ଅନ୍ୟ ସହିତ ଆଖିର ଯୋଗାଯୋଗ ନ ରଖି ତଳକୁ ନଜର ରଖି କଥା କହନ୍ତି। ପ୍ରଥମ କରି କେବଳ ସୁରେଶ ଭାଇଙ୍କ ସହ ସଂସ୍ପର୍ଶରେ ଆସିଥିଲି ମନେ ନାହିଁ କିନ୍ତୁ ତାଙ୍କ ବଡ଼ ପୁଅ ନାଙ୍ଗୁ ସହିତ। ନାଟ୍ୟଚେତନାର ଲୋକନାଟ୍ୟ ମେଳା କାର୍ଯ୍ୟକ୍ରମର ଭେଟାଭେଟି ହୋଇଥିଲା। ଆମଠୁ ବହୁତ ଛୋଟ ହୋଇଥିଲେ ମଧ୍ୟ ଆମ ଦୁଇଜଣଙ୍କ ଭିତରେ ଗୋଟିଏ ଭଲ ବନ୍ଧୁତ୍ୱ ତିଆରି ହୋଇଥିଲା। ମୁଁ ସେତେବେଳେ ନାଟ୍ୟଚେତନାକୁ ଅଦିନିଆ ଭାବରେ ଆସୁଥାଏ। କେତେ ଲୋକଙ୍କ ସହ ଭେଟ ହୁଏ ମନେରଖି ନଥାଏ। କିନ୍ତୁ ନାଙ୍ଗୁ ଯେ ସୁରେଶ ଭାଇଙ୍କ ପୁଅ ଏ କଥା ଜାଣିନଥାଏ। ସେହି ସମୟରେ ନାଟ୍ୟଚେତନାର ପ୍ରମାଣ ରକ୍ଷକ ଭାବରେ ନାଙ୍ଗୁ ସମୟ ଦେଉଥାଏ।

୨୦୦୨ ମସିହାରେ ନାଟ୍ୟଚେତନାର ଅନ୍ତରଙ୍ଗ ନାଟକ ବିପ୍ଳବୀ ବିହଙ୍ଗ ନାଟକ ରାଉରକେଲାରେ ପ୍ରଦର୍ଶିତ ହେଉଥିଲା। ଏହା ଏକ ଅଭିଯାନର ସାରା ଓଡ଼ିଶାର ବିଭିନ୍ନ ସହରରେ ପ୍ରଦର୍ଶିତ ହେବାର ଯୋଜନାରେ ଥାଏ। ସୁରେଶ ଭାଇ ଏହାର ବିବରଣୀ ପ୍ରସ୍ତୁତ କରିବା ଦାୟିତ୍ୱରେ ଥା'ନ୍ତି। ନାଟକ ପ୍ରଦର୍ଶନ ପରଦିନ ଆମ ଘରକୁ ଆସିଥାନ୍ତି। ଅଳ୍ପ ସମୟ କଥାବାର୍ତ୍ତାରେ ଆମେ ଭାଇ-ଭଉଣୀ ତାଙ୍କୁ ଗୋଟିଏ ଜ୍ଞାନର ମନ୍ଦିରରେ ଚିତ୍ରିତ କଲୁ। ସୁବୋଧ ଭାଇଙ୍କ ଅନୁରୋଧ କ୍ରମେ ସେଇ ରାତିରେ ବାହାରିଲି ନାଟ୍ୟ ଚେତନାର ଅନ୍ତରଙ୍ଗ ନାଟ୍ୟ ଅଭିଯାନରେ। ପୂରା ଅଭିଯାନରେ ସୁରେଶ ଭାଇଙ୍କ ସହ ମିଶି ତାଙ୍କୁ ବିବରଣୀ ପ୍ରସ୍ତୁତିରେ ସହଯୋଗ କଲି।

ଆୟକର ବିଭାଗର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ହୋଇଥିଲେ ମଧ୍ୟ ନିଜକୁ କେବେ ଅନ୍ୟମାନଙ୍କ ଆଗରେ ଦେଖାଇ ହେଉନଥିଲେ। ଖୁବ୍ ସାଧାରଣ ମଣିଷ ହିସାବରେ ଚଳୁଥିଲେ। ତାଙ୍କ ପାଖରେ ଗର୍ବ ଓ ଅହଂକାରର ଚିହ୍ନ ଦେଖିବାକୁ ମିଳେ ନାହିଁ। ଯେତେବେଳେ ଯାହା ପଚାରୁ, ସତେ ଯେମିତି ସରସ୍ୱତୀଙ୍କ ମାନସ ସନ୍ତାନ ଭଳି ମୁଖରୁ ସଂଗେ ସଂଗେ ଝରିପଡୁଥିଲା। ନିଜକୁ ଜଣେ ଜ୍ଞାନୀ ଭାବରେ ପରିଚୟ ଦେବା ସତେ ଯେମିତି ତାଙ୍କ ପାଇଁ ଧୃଷ୍ଟତା ଥିଲା। ବେଳେବେଳେ ଲାଗେ ଗଛରେ ଫଳ ହେଲେ ଗଛଟି ଯେପରି ସ୍ୱତଃସ୍ଫୂର୍ତ୍ତ ଭାବରେ ନଇଁପଡ଼େ, ସୁରେଶ ଭାଇ ଠିକ୍ ସେପରି ଜଣେ ବ୍ୟକ୍ତି। ନିଜର ନାମ କମାଇବା ପାଇଁ ଟିକିଏ ବୋଲି ଆକାଂକ୍ଷା ନଥିଲା। ନିଜର ଦକ୍ଷତା ଅନୁସାରେ କାର୍ଯ୍ୟ କରିବାକୁ ସଦାବେଳେ ପ୍ରସ୍ତୁତ ହୋଇ ରହିଥା'ନ୍ତି। ଜଣେ କର୍ମଠ, ଗାଳ୍ପିକ, ସାହସିକ, ସମୀକ୍ଷକ, ଅନୁବାଦକ, ସ୍ତମ୍ଭକାର, କାବ୍ୟିକ ଇତ୍ୟାଦି କଳାରେ ନୈପୁଣ୍ୟ ଥିଲେ। ଓଡ଼ିଆ ଭାଷା ସାହିତ୍ୟରେ ପାଣ୍ଡିତ୍ୟ ଅର୍ଜନ କରିବା ସହିତ ଇଂରାଜୀ, ହିନ୍ଦୀ, ବଙ୍ଗଳା ସାହିତ୍ୟରେ ମଧ୍ୟ ଅଗାଧ ଜ୍ଞାନ ଥିଲା। ମୁଁ ବଙ୍ଗଳା ଭାଷା କହିପାରେ କିନ୍ତୁ ଅକ୍ଷର ବହୁତ କଷ୍ଟରେ ହିନ୍ଦୀ ଓ ଓଡ଼ିଆ ସହ ତୁଳନା କରି ଚିହ୍ନିବାକୁ ଚେଷ୍ଟା କରେ। ଥରେ ଦେଖିଲି ସୁରେଶ ଭାଇ ବଙ୍ଗଳା ପଢ଼ି ପଢ଼ି ଆମକୁ ରବିନ୍ଦ୍ର ସଂଗୀତର ଏକ ପଙ୍‌କ୍ତି ବୁଝାଉଛନ୍ତି। ଆଶ୍ଚର୍ଯ୍ୟ ହୋଇ ପଚାରିଲି ନିପଟ ମଫସଲରୁ ପଢ଼ାପଢ଼ି ଆରମ୍ଭ କରି ବଙ୍ଗଳା ପଢ଼ି ଜାଣିଲେ କିପରି ? ସେଇଠୁ ସେମୋତେ ଏଇ ପଢ଼ିବାର କୌଶଳଟି କହିଲେ, ଯାହା ଆଜି ପର୍ଯ୍ୟନ୍ତ ବ୍ୟବହାର କରିଆସୁଛି। ସେ କହିଲେ ଆମ ଓଡ଼ିଆ ଅକ୍ଷର ହେଉଛି ଗୋଲ୍ ଗୋଲ୍

ଅଳଙ୍କାର ସଦୃଶ। ତାକୁ ମଝିରୁ ଭାଗ କରି ଉପରଭାଗ ବାହାର କରିଦେବା, ତେବେ ଅଧିକାଂଶ ଅକ୍ଷର ବଙ୍ଗଳା ଅକ୍ଷର ସହିତ ସମାନ। ଏହି କୌଶଳଟି ପରବର୍ତ୍ତୀ ସମୟରେ ବଙ୍ଗଳା ପଢ଼ିବା ପାଇଁ ମୋତେ ଅନେକ ସାହାଯ୍ୟ କରିଥିଲା। ତେଣୁ ସେ ଜଣେ ଗବେଷକ ବୋଲି ଏଥିରୁ ପ୍ରମାଣିତ ହୁଏ।

ଆଧୁନିକ ଭାଷା ସାହିତ୍ୟ ଛଡ଼ା ଲୋକକଳା ସାହିତ୍ୟର ମଧ୍ୟ ତାଙ୍କର ରୁଚି ଥିଲା। ପାଲା, ଦାସକାଠିଆ, ବିଭିନ୍ନ ଲୀଳା ନାଟକ, କଣ୍ଢେଇ ନାଚ, ଏ ସବୁକୁ ଉଜ୍ଜୀବିତ ରଖିବା ପାଇଁ ସେ ବିଭିନ୍ନ ପ୍ରୟାସମାନ କରୁଥିଲେ। କଣ୍ଢେଇ ସଂଗ୍ରହ କରିବା ତାଙ୍କର ଗୋଟେ ରୁଚି। ତାଙ୍କର ଇଚ୍ଛା ଥିଲା କଣ୍ଢେଇ ସଂଗ୍ରହାଳୟ କରିବା। ଏଥିପାଇଁ ନିଜ ଘରେ ବିଭିନ୍ନ ଆଡୁ କଣ୍ଢେଇ ସଂଗ୍ରହ କରି ଗୋଟିଏ ଛୋଟ ସଂଗ୍ରହାଳୟ ତିଆରି କରିଥିଲେ। ଯୁଆଡ଼େ ଗଲେ ଆମକୁ କହନ୍ତି ତାଙ୍କ ପାଇଁ କଣ୍ଢେଇ ଆଣିବା ପାଇଁ। ମନେଅଛି ଶେଷଥର ବିଦେଶରୁ ଆଣିଥିବା କଣ୍ଢେଇ (ହାତ କଣ୍ଢେଇ) ଯେତେବେଳେ ତାଙ୍କୁ ଦେଲୁ ସେ ଏତେ ଖୁସି ହେଲେ ଯେ କହିଲେ, ଚାକିରିରୁ ଅବସର ନେଲା ପରେ ସେ ଏଇ କଣ୍ଢେଇ ଘରଟିକୁ ଗୋଟିଏ ବନ ସଂଗ୍ରହାଳୟ ରୂପ ଦେବେ। କିନ୍ତୁ ବିଧିର ବିଧାନ ବିଚିତ୍ର। ତାଙ୍କର ଏ ସ୍ୱପ୍ନକୁ ପୂରଣ କରିବାକୁ ଭଗବାନ ଆଉ ସମୟ ଦେଲେ ନାହିଁ।

କାଁ ଭାଁ କେତୋଟି ନାଟକ ଲେଖନ୍ତି। କିନ୍ତୁ ଜଣେ ଭଲ ସମୀକ୍ଷକ। ଆମ ନାଟକ ଦେଖିବାକୁ ସେ ଭାରି ଭଲପାଆନ୍ତି। କାରଣ ସେ ଏଥିରୁ ଯେ ମାଟିର ବାସ୍ନା ପାଆନ୍ତି ବୋଲି କହନ୍ତି। ସବୁବେଳେ କହନ୍ତି ବେବି ଏଥର ନାଟକ ନେଇ ଆମ ଗାଁରେ ଲୋକମାନଙ୍କୁ ଦେଖାଇବା। ମୁଁ ଯିବା ଆସିବା ଖର୍ଚ୍ଚ ଦେବି। ଭାବୁ ସୁରେଶ ଭାଇ ଖାଲି ଗୋଟେ ମଜାରେ କହୁଛନ୍ତି। କିନ୍ତୁ ଯିବା ପୂର୍ବରୁ ସ୍ଥିର କରିଥିଲେ ନାଟକ ଯେପରି ହେଉ ପ୍ରଦର୍ଶନ ହେବ। ଆମର ନାଟକ ପ୍ରସ୍ତୁତ ଚାଲିଥାଏ। ହଠାତ୍ ଖବର ପାଇଲୁ ସେ ମୁରୁକି ହସ ମୁହଁଟି ଆମ ସହିତ ଯେପରି ଛଳନା କରୁଥିଲା। ଆମକୁ ପାଟିରେ କିଛି ନ କହି ଭାବର ମାଧ୍ୟମରେ ଆମ ମନ ଭିତରେ ଢାଳି ତାଙ୍କ ଇଚ୍ଛାକୁ ପୂରଣ କରିବାକୁ ଆଉ ସବୁଦିନ ପାଇଁ ନୀରବ ରହିଗଲେ। ବିଶ୍ୱାସ କରିପାରିଲୁ ନାହିଁ। ଯେତେବେଳେ ହଠାତ୍ ଏ ଖବର ଶୁଣିଲୁ, ଆମେ ଆମ ନାଟକ ଅଭ୍ୟାସ ନାଟ୍ୟଗ୍ରାମରେ କରୁଥାଉ। କଳିଙ୍ଗ ହାସ୍‌ପାତାଳରେ ସେ ଶେଷଥର ପାଇଁ ଦର୍ଶନ କଲି। ସେ ମୁରୁକି ହସଟି ଯେପରି ସବୁଦିନ ପାଇଁ ସ୍ତବ୍ଧ। କିନ୍ତୁ ମନେହେଲା ଯେପରି ଉପରେ ଥାଇ ଇଙ୍ଗିତ କରୁଛନ୍ତି "ନାଟକ ପ୍ରଦର୍ଶନ ବନ୍ଦ କରିବ ନାହିଁ, ଆମ ଗାଁରେ ଯେପରି ନାଟକ ହେବ।" ଶେଷରେ ୨୦୧୫ ମସିହା ଜାନୁୟାରୀ, ୨ ତାରିଖ ଦିନ ତାଙ୍କ ୧ମ ବର୍ଷକିୟାରେ ତାଙ୍କ ନିଜ ଜନ୍ମମାଟିରେ ନାଟକ 'ଧୂଆଁ' ପରିବେଷଣ କରିଥିଲୁ। ସେ ମୁରୁକି ହସଟି ନିଜ ଗାଁର ସବୁ ଗ୍ରାମବାସୀଙ୍କ ଭିତରେ ଯେପରି ଖେଳେଇ ହେଇ କହୁଥିଲା "ଦେଖ ମୁଁ ଏବେ ବି ସମସ୍ତଙ୍କ ହୃଦୟ ଭିତରେ ଅଛି।" ସତରେ ଆପଣ ସୁରେଶ ଆପଣ ଶାନ୍ତ, ସରଳ, ମିଷ୍ଟଭାଷୀ। ଆପଣଙ୍କର ଏଇ ମୁରୁକି ହସ ଆମକୁ ଧନ୍ୟ କରିଛି।

